

# କୃଷ୍ଣପ୍ରସାଦ ଚୟନିକା

# କୃଷ୍ଣପ୍ରସାଦ ଚୟନିକା

ସଙ୍କଳନ:
ଡକ୍ଟର ଭଗୀରଥି ନାୟକ, (ମଙ୍ଗଳପୁର)
ଭାସ୍କର ଚନ୍ଦ୍ର ଅଗସ୍ତୀ, (ଅଭଣା)

ପରିବେଷକ

କୃଷ୍ଣପ୍ରସାଦ ସ୍ମୃତି ସଂସଦ

ଅଭଣା—୭୫୬୦୫୧

# କୃଷ୍ଣପ୍ରସାଦ
# ଚୟନିକା



ସଙ୍କଳକ ଓ ପ୍ରକାଶକ :

ଡ଼କ୍ଟର ଭଗୀରଥି ନାୟକ,

ଅଧ୍ୟାପକ ଫକୀର ମୋହନ କଲେଜ, ବାଲେଶ୍ୱର

ଭାସ୍କର ଚନ୍ଦ୍ର ଅଗସ୍ତୀ

ବି: ଏ: ବି: ଇଡ଼ି: (ଅଭଣା)



କୃଷ୍ଣପ୍ରସାଦ ସ୍ମୃତିସଂସଦ,

ଅଭଣା ୭୫୬୦୫୧





ପ୍ରଥମ ପ୍ରକାଶ :

୧୯୮୧ ମାର୍ଚ୍ଚ



ପ୍ରଚ୍ଛଦ :

ଉଦୟ ନାରାୟଣ ଜେନା



ମୁଦ୍ରଣ :

ଲିପିକାର, ସୋର



ମୂଲ୍ୟ-ଟ୧୫-୦୦ (ପନ୍ଦର ଟଙ୍କା)

ମା' "ବ୍ରହ୍ମାଣୀ"ଙ୍କ ଚରଣ ତଳେ ଲୁପ୍ତ

କାବ୍ୟ କୁଞ୍ଜକୁ ସମର୍ପଣ କଲୁଁ ।

ସଂକଳକ

'ନୀଡରେ ଶୋଇଛି କେଳିଆ ପାହାଡ଼' ତୁମେ ତ ଫେରିଲ ନାହିଁ
'କେଶ ହୋଇ ନଈ କୂଳେ' କିଏ କାନ୍ଦେ ତୁମେ କି ଦେଖିବ ନାହିଁ ।
'ମାଈ ଫଳ ଘେରା କୁହୁଡ଼ି ପାଟେର' 'ଗ୍ରାମର ଓଢ଼ଣୀ ତଳେ'
ତମ୍ବ ଧାପାଳୀର ସବୁଜ କବିତା ତୁମ ରୂପଗୁଣ ଝୁରେ ।
ତୁମ 'ଟିପଖାଲ ମାଳଭୂଇଁ ଆଜ କେଡ଼େ ହତଶ୍ରୀ ଦେଖେ
'କୋରେଇ ଫୁଲ' ଯେ ଝାଉଁଳି ପଡ଼ିଛି 'ମୁରୁଗାର ବଣ' ପାଖେ ।
'ଝିଲ୍ଲୀର ଡାକ' ଏବେ ବି ଶୁଭୁଛି ପଲ୍ଲୀ ଅନ୍ଧାର ଅଠ
'ତମ୍ବର ସଳିତା ଅଧା ଜଳିଥିଲା ଅଧା ରହିଥିଲା ବାକି ।
ବଅସର ରୂପ ମଉଳି ନଥିଲା ତୁମେ ଚାଲିଗଲ ଫାଙ୍କି
'ଯୋର କୂଳ ବର ମୂଳରେ କିଏ ସେ ବସିବ କବିତା ଲେଖି ।
ଅଙ୍କା ବଙ୍କା ସେହି କଣ୍ଠା ଗୋହିରର ପାଳଧୂଆ ଫୁଲ ଝୁରେ
ଏବେ ବି ସେଠାରେ 'କୁନି ଶଶାଛୁଆ' କଅଁଳ ଦୁବରେ ଖେଳେ ।
ମେରୁ ଫୁଲ ତୋଳି ଦେଇଥିଲ ହାତେ ସେଫୁଲ ମଉଳି ନାହିଁ
କବିତାରେ ଦେଲ ସୁରର କାଉଁଶ୍ରୀ ସେ ସୁରବି ହଜିନାହିଁ ।
ଅଭିମାନ ଭୁଲି କୁହ ପଦେ କଥା 'କେଶବ କବି' ହେ ହଠ
ତୁମ ମନଗଢ଼ା କବିତାରେ ଡାକେ ଆସ ହେ ଅପେକ୍ଷା 'ନଷ୍ଟ' ।

ସ୍ମୃତିସଂସଦ



ଜନ୍ମ ତା ୧୬ । ୧୦ । ୧୭ (ମୂଳଗାଁ), ମୃତ୍ୟୁ ୧୭ । ୬ । ୭୧ (ବଂଧୂଛିଆ)

''ଏ ପାରରେ ଥାଇ ଦେଖିଲନି ତୁମ ପ୍ରତଭାର ଦୀପଶିଖା
ସେ ପାରରେ ରହ ନିଅ କବ ଏଇ ଅଶ୍ରୁର ''ଚନ୍ଦନକା''

## ଚୟନିକା ସଂପର୍କରେ ପଦେ:—

କୃଷ୍ଣପ୍ରସାଦ ବେହେରା ଓଡ଼ିଆ ଗୀତି କବିତାରେ ବିଶିଷ୍ଟ ଆସନ ଅଧିକାର କରିବାକୁ ଜଣେ ସମର୍ଥ ସ୍ରଷ୍ଟା ହେଲେ ହେଁ ତାଙ୍କ ରଚନାର ପ୍ରଚାର ଓ ପ୍ରସାର ଅଭାବରୁ ସେ ଲୋକ ଲୋଚନର ଅନ୍ତରାଳରେ ରହିଗଲେ । ଯଦି ବା ତାଙ୍କୁ କେହି ଚହ୍ନିବାର ସୁଯୋଗ ପାଇଲା, ସେ ଚହ୍ନିବା କେବଳ "ଯାତ୍ରା ମାଷ୍ଟ୍ରେ" ଭିତରେ ସୀମାବଦ୍ଧ ହୋଇ ପଡ଼ିଲା । ଓଡ଼ିଶାର ମାଟି, ପାଣି, ପବନକୁ ସରଳ ଭାଷାରେ ଓ ସରସ ଛନ୍ଦରେ ରୂପାୟିତ କରିବାରେ ତାଙ୍କର ଯେଉଁ ଆବେଗ ଓ ନିଷ୍ଠା ତାହାର ପଟାନ୍ତର ନାହିଁ । ତାଙ୍କର ମନମତାଣିଆ ସଙ୍ଗୀତର କାଉଁରି ସ୍ପର୍ଶ ଶ୍ରୋତା ପ୍ରାଣରେ ପୁଲକ ଆଣିଥିଲା । ଶ୍ରୋତା ପୁଣି ତାଙ୍କୁ ଭୁଲିଲା, ଯେହେତୁ ପ୍ରଚାର ଓ ମୁଦ୍ରାଯନ୍ତ୍ର ଯୁଗ ବେହେରାଙ୍କ ସୃଷ୍ଟି ତପସ୍ୟାର ପ୍ରତିଲିପି ରଖି ପାରିନି । ଜଣେ ସାଧାରଣ କଳାକାର ଭାବେ ଜୀବନ ଆରମ୍ଭ କରିଥିବା କୃଷ୍ଣପ୍ରସାଦ ହୁଏତ ଜାଣି ପାରିଲେ ନାହିଁ ଯେ ସେ ଅଲକ୍ଷ୍ୟରେ ତାଙ୍କ ଗୀତି କବିତା ପାଇଁ ଅପେରା ଜଗତରେ ଅତି ପ୍ରିୟ ହୋଇ ଉଠିଛନ୍ତି । ଅଭାବ ଅନଟନର ତୀବ୍ର ଦହନ ଜ୍ୱାଳା ଭିତରେ ନିଜ ସୃଷ୍ଟି ଆଲୋକକୁ ଆସୁ ଏହା ହୁଏତ ସେ ଚାହିଁ ଥିବେ, ମାତ୍ର କାର୍ଯ୍ୟତଃ ତାହା ହୋଇ ପାରିଲା ନାହିଁ ଜାଣି ସେ ତୀବ୍ର ମାନସିକ ଯନ୍ତ୍ରଣାର ଶିକାର ହୋଇଛନ୍ତି । ତାଙ୍କ ସଂସାର ଗୁଡ଼ିବା ପ୍ରାୟ ଗୋଟିଏ ଦଶନ୍ଧି ହୋଇଗଲିବ । ଇତୋମଧ୍ୟେ ତାଙ୍କ ଗୀତି କବିତା ଓ ନାଟକକୁ ନେଇ ବ୍ୟବସାୟ ସୂତ୍ରରେ ବହୁ ଶିଳ୍ପୀ ଜୀବିକାର୍ଜନ କରୁଛନ୍ତି । କେହି ଏହି ଦରଦୀ ଶିଳ୍ପୀଙ୍କର ନାମୋଚ୍ଚାରଣ କରି ପ୍ରତ୍ୟାତ ଆତ୍ମାପ୍ରତି ସମ୍ମାନ ପ୍ରଦର୍ଶନ କରୁଛନ୍ତି ତ କେହି କଳାପାହାଡ଼ ସାଜି କୃଷ୍ଣପ୍ରସାଦଙ୍କ ଗୀତି କବିତା ଓ ନାଟକକୁ ସାମାନ୍ୟ ଫେଣ୍ଟା ଫେଣ୍ଟି କରି ନିଜସ୍ୱ କରିବାର ଉଦ୍ୟମ କରୁଛନ୍ତି । ଏଭଳି ଅବସ୍ଥାରେ ଆମେ କେତେଜଣ ବିଚାର କଲୁଁ, କୃଷ୍ଣପ୍ରସାଦଙ୍କ ଗୀତି କବିତା ଗୁଡ଼ିକୁ ସଂଗ୍ରହ କରିସାରି ଏକ ସଂକଳନ ପ୍ରସ୍ତୁତ କରିବା ଆମର ଏକ କାମ୍ୟ କର୍ତ୍ତବ୍ୟ ହେବ । ପ୍ରାଥମିକ ଉଦ୍ୟମ ଭାବେ ତାଙ୍କର କର୍ମଭୂମି ଅଭଣା ଓ ମଙ୍ଗଳପୁରରୁ ଗୀତି କବିତା ଗୁଡ଼ିକୁ ସଂଗ୍ରହ କରାଗଲା । ସଂଗ୍ରହ କରାଗଲା ବେଳେ ବହୁ କବିତା ବିକୃତ ଓ ବିକଳାଙ୍ଗ ହୋଇ ପଡ଼ିଥିଲା ।

ଉକ୍ତ ସଂକଳନଟିକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ଆମେ ଯେ ଧ୍ୟାନ ଦେଇ ନାହୁଁ ଏହା ଅତି ସତ୍ୟ କଥା । କବିଙ୍କର ମୂଳ କବିତାଗୁଡ଼ିକ ବହୁଭାବେ ରୂପାନ୍ତରିତ ହୋଇଯାଇଛି । ତେଣୁ ଭିନ୍ନ ଭିନ୍ନ ଲୋକଠୁଁ ଏସବୁକୁ ସଂଗ୍ରହ କରି ତନ୍ମଧ୍ୟରୁ କେଉଁଟି 'ବେହେରା ଶୈଳୀ'ର ନିକଟ ବର୍ତ୍ତୀ ତାହା ସ୍ଥିର କରିବା ନିମିତ୍ତ ଆମକୁ ଶ୍ରମ ସ୍ୱୀକାର କରିବାକୁ ପଡ଼ିଛି । ବିଳମ୍ବରେ ହେଲେ ମଧ୍ୟ ସଂକଳନଟିଏ ପ୍ରସ୍ତୁତ କରି ପାରିଥିବା ଯୋଗୁଁ ଆମେ ନିଜକୁ ଗର୍ବ ମନେ କରୁଛୁ । କୃଷ୍ଣ ପ୍ରସାଦ ଖାଲି ଅପେରା ଜଗତରେ ନୁହେଁ । ଓଡ଼ିଆ ଗୀତି କବିତା ରାଜ୍ୟରେ ଏକ ବିସ୍ମୟ । ସାଧାରଣ ଶିକ୍ଷାଗତ ଯୋଗ୍ୟତା ନଥାଇ ଲୋକ ଯେ ବ୍ୟକ୍ତିଗତ ଉଦ୍ୟମ ଓ ଅଧ୍ୟୟନ କରି କେତେ ଉଚ୍ଚକୁ ଉଠିପାରେ ତାହାର ଏକ ଜ୍ୱଳନ୍ତ ଉଦାହରଣ ହେଉଛନ୍ତି କୃଷ୍ଣପ୍ରସାଦ ବେହେରା ।

କବିଙ୍କ ଜୀବନ ଥିଲା ସଂଗ୍ରାମ ମୁଖର । ବିଶେଷ କରି ସଂଗୀତ ଓ ନାଟକ ଭଳି ସୁକୁମାର ସୌନ୍ଦର୍ଯ୍ୟ ବିଜ୍ଞାନକୁ ନେଇ ଜୀବିକାର୍ଜନ କରିବା ଯେ ବିଗତ ୩, ୪ଟି ଦଶନ୍ଧିରେ କିଭଳି ବିଡ଼ମ୍ବନାଥିଲା ତାହା କୃଷ୍ଣପ୍ରସାଦଙ୍କ ଜୀବନୀ ଆଲୋଚନା କଲେ ସ୍ପଷ୍ଟ ପ୍ରତିଭାତ ହୋଇଥାଏ । ଅନ୍ନ ସଂସ୍ଥାନ ପାଇଁ ଗୋଟିଏ ଅପେରାରୁ ପୁଣି ଅନ୍ୟ ଅପେରାକୁ ଯାଇ କାଦୁଅ ମାଟି ରଙ୍ଗନେଇ କଳାକାର ତିଆରି କରିବା ଯେ, କିଭଳି କଠିନ ସମସ୍ୟା ସୃଷ୍ଟି କରେ ତାହା କେବଳ ଅନୁଭବି ଜାଣେ । ଏସବୁ ପ୍ରତିକୂଳ ବ୍ୟବସ୍ଥା ସତ୍ତ୍ୱେ କୃଷ୍ଣପ୍ରସାଦ ଗଭୀର ମନନଶୀଳ ପ୍ରତିଭା ନେଇ ଜୀବନରେ ବହୁ ପ୍ରତିବନ୍ଧକର ସମ୍ମୁଖୀନ ହୋଇଛନ୍ତି ଅନେକ ଲୋକ ତାଙ୍କୁ ସମସ୍ତ ବିଶେଷରେ ଭୁଲ ବୁଝିଛନ୍ତି । କେହି ବି ତାଙ୍କ ପ୍ରତି ସହାନୁଭୂତି ପ୍ରକାଶ କରିଛନ୍ତି । ଏଭଳି ନାନା ତିକ୍ତ-ମଧୁର ପରିବେଶର ସମ୍ମୁଖୀନ ହୋଇ ନିଜ ଜୀବନ ଦର୍ଶନକୁ କବି ପ୍ରକାଶ କରି ଲେଖିଛନ୍ତି:—

"ବୃନ୍ଦାବନରଗଛ ମୁହିଁ
ଯୁଗ ଯୁଗ ଅଛି ରହି
ଲୁହର ଓହଳ ଝୁଲେ ନୟନେ ମୋର
ଆପଣାର କରି କେତେ କଲେଣି ପର" ।

ଯେଉଁମାନେ ଜୀବନ୍ତ କୃଷ୍ଣପ୍ରସାଦଙ୍କ ମୃତ୍ୟୁ-ଗୃରଠ ପାଇଁ ଏକଦା କୁଣ୍ଠା ପ୍ରକାଶ କରୁଥିଲେ ତାଙ୍କର ଦେହାନ୍ତ ପରେ ତାଙ୍କର ଶୂନ୍ୟ ତାକୁ ମର୍ମେ ମର୍ମେ ଉପଲବ୍ଧି କଲେଣି । ପ୍ରତିଭା କେବେହେଲେ ଲୁଚି ରହିପାରେନା । ଶତ ଝଡ଼ ଓ ସହସ୍ର ତୋଫାନ ମଧ୍ୟରେ ତାହା ଲୋକ ଲୋଚନକୁ ଆସେ ।

ଦୀର୍ଘ ୪୦ ବର୍ଷ ଧରି କୃଷ୍ଣପ୍ରସାଦ ଏକାଧିକ ଯାତ୍ରାଦଳରେ ଶିକ୍ଷକତା କରି ଆସିଛନ୍ତି । ଅବସ୍ଥା ଚକ୍ରରେ ସେହି ଯାତ୍ରାଦଳଗୁଡ଼ିକ ଭାଙ୍ଗି ଯାଇଛି । ତାଙ୍କ ରଚିତ ଗୀତ କବିତା ଓ ଗୀତନାଟ୍ୟଗୁଡ଼ିକ ତାଙ୍କର ଏକଦା ଅତି ଆଦରର ଶିଷ୍ୟ ଶିଷ୍ୟମାନଙ୍କ ନିକଟରେ ରହିଥିବା ଖବର ଆମେ ଜାଣିଛୁ । ମାତ୍ର ପରିତାପର ବିଷୟ ସେମାନେ ତାହା ହସ୍ତାନ୍ତର କରିବାକୁ କୁଣ୍ଠା ପ୍ରକାଶ କରୁଥିଲାବେଳେ ଅପର ପକ୍ଷରେ ସେସବୁକୁ ବିକ୍ରୟ କରି କିମ୍ବା ସାମାନ୍ୟ ପରିବର୍ତ୍ତନ କରି ନିଜସ୍ୱ କରିବାର ଉଦ୍ୟମ କରୁଛନ୍ତି । ସୁଖର କଥା ମଙ୍ଗଳପୁର ଏବଂ ଅଭଣା ଯାତ୍ରା-ଦଳର ଅଭିନେତାମାନେ ସ୍ୱେଚ୍ଛାରେ କିଛି ପାଣ୍ଡୁଲିପି ଦାନ କରିଛନ୍ତି । ଯେଉଁ ଗୁଡ଼ିକ ଆମର ହସ୍ତଗତ ହୋଇଛି ସେଗୁଡ଼ିକ ଏତେ ଜୀର୍ଣ୍ଣ ଯେ ସେଥିରୁ ପାଠୋଦ୍ଧାର କରିବା ସହଜ ନୁହେଁ । ତଥାପି ଯତ୍ନ ସହକାରେ କାର୍ଯ୍ୟ ସଂପାଦନ କରାଯାଇଛି ।

ଆମର ବହୁ ଉଦ୍ୟମ ସତ୍ତ୍ୱେ ଅତି ଜଣାଶୁଣା କେତୋଟି ଗୀତକବିତା ମିଳି ପାରିଲା ନାହିଁ । ତା'ଛଡ଼ା ସଂଗୃହିତ ଓ ସଂଯୋଜିତ ଗୀତକବିତା ଗୁଡ଼ିକ ମଧ୍ୟରୁ ହୁଏତ ଗୋଟିଏ ଯୋଡ଼ିଏ କୃଷ୍ଣପ୍ରସାଦ ବେହେରାଙ୍କ ରଚନା ହୋଇ ନପାରେ, କାରଣ ଯେଉଁସବୁ 'ଆଳ-ମାଳୀ' ପାଣ୍ଡୁଲିପିରୁ ଏ ଗୁଡ଼ିକ ସଂଗ୍ରହ କରାଯାଇଛି ସେଥିରେ ଦୋଷ ତ୍ରୁଟି ରହିଯିବା ସ୍ୱାଭାବିକ । ଏ ସବୁକୁ ଜାଣି ମଧ୍ୟ ତାଙ୍କର ଅତି ପୁରାତନ ଶିଷ୍ୟମାନଙ୍କ ସାହାଯ୍ୟ ନେଇ ଆମେ ଯଥାସମ୍ଭବ ନିର୍ଭୁଲ ବେହେରାଙ୍କ ଗୀତକବିତାକୁ ଚୟନିତ କରୁଛୁ । ଏ ସବୁ ପରେ ଯଦି କିଛି ବ୍ୟତି-କ୍ରମ ରହି ଯାଇଥାଏ ତେବେ ସହୃଦୟ ପାଠକଗଣ ଆମ ଦୃଷ୍ଟି ସମକ୍ଷକୁ ଆଣିଲେ ପରବର୍ତ୍ତୀ ମୁଦ୍ରଣରେ ଆମେ ଏହି ଭ୍ରାନ୍ତି ଦୂର କରିବା ନିମିତ୍ତ ଯତ୍ନବାନ ହେବୁ ।

ଚୟନିକାର ପାଣ୍ଡୁଲିପି ପ୍ରସ୍ତୁତ ହେଲା ପରେ ପ୍ରକାଶକର ଅନ୍ୱେଷଣ କରିବାକୁ ଯାଇ ଆମେ ହତାଶ ହୋଇଛୁ । ତଥାପି ସେଥିରେ ଆମେ ଖାଙ୍କ ନିମନ୍ତ୍ର ପ୍ରକାଶନକୁ ଏକ ପରମ କର୍ତ୍ତବ୍ୟ ବୋଲି ବିଚାର କରିଛୁ । କାରଣ ଏହି ଦରଦୀ କବି ଆମ ପରିବାର ସହିତ ଘନିଷ୍ଠ ରୂପେ ପରିଚିତ ଥିଲେ ।

ଅଭଣା ବେଳାଭୂମି ମହା ବିଦ୍ୟାଳୟର ଅଧ୍ୟାପକ ଓ ଅଫିସ ସହ କର୍ମୀଗଣ, ମଧୋଇ ବିଦ୍ୟାଳୟର ଶିକ୍ଷକ ଶ୍ରୀ ଭଗୀରଥ ରାଉତ ଓ ଅନ୍ୟ ଶିକ୍ଷକ ବନ୍ଧୁଗଣ ପାଣ୍ଡୁଲିପି ପ୍ରସ୍ତୁତ କରିବାରେ ଆମକୁ ବହୁଭାବେ ସାହାଯ୍ୟ କରିଛନ୍ତି ଏହା ବ୍ୟତୀତ ମଙ୍ଗଳପୁର ଅଭିନେତା ଶ୍ରୀ ଭାସ୍କର ଚନ୍ଦ୍ର ବାରିକ, କୃପାସିନ୍ଧୁ ଦେହେରି, ରାମଚନ୍ଦ୍ର ବେହେରା, ତାଳପଦାର ନାରାୟଣ ଚନ୍ଦ୍ର ରାଉତ, ଅଭଣାରେ ନୀଳାମ୍ବର ପଣ୍ଡା ଓ ଭବଗ୍ରାହୀ ତ୍ରିପାଠି ଆମକୁ ଯଥା ସାଧ୍ୟ ସାହାଯ୍ୟ

ଦାନ କରିଛନ୍ତି । ଶିକ୍ଷକ ଶ୍ରୀ ଯଦୁନ୍ ପାଣିଗ୍ରାହୀ ମୁଦ୍ରଣ ସଂଶୋଧନରେ ଆମକୁ ସାହାଯ୍ୟ କରିଥିବାରୁ ଆମେ ତାଙ୍କୁ ଧନ୍ୟବାଦ ଦେଉଛୁଁ ।

ଚମ୍ପକଳା ପ୍ରକାଶନରେ ଆମେ ଖୁସି ତିନୋଟି କାରଣରୁ । ପ୍ରଥମତଃ-ଏ ଭଳି ଜୀବନ୍ତ ସୃଜନ ଚିରଦିନ ପାଇଁ ଦୁନିଆଁ ବକ୍ଷରୁ ଲୋପ ପାଇ ଆସୁନ୍ତି । ଦ୍ୱିତୀୟତଃ ଆମେ ୰କୃଷ୍ଣ ପ୍ରସାଦଙ୍କ ସ୍ମୃତି ରକ୍ଷାକରିବା ପାଇଁ କିଛି କରି ପାରିଲୁଁ ଏବଂ ତୃତୀୟତଃ କବିପତ୍ନୀ-କମଳାଦେବୀଙ୍କ ଜୀବଦ୍ଦଶାରେ ଏହା ପ୍ରକାଶ ପାଇବ । ତାଙ୍କର ଏକାନ୍ତ ଅନ୍ତୀତ୍ୱ ଅଭଣାର ଶ୍ରୀ ବାଞ୍ଛାନିଧି ଅଗସ୍ତିଙ୍କ ଠାରୁ କୃଷ୍ଣ ପ୍ରସାଦଙ୍କ ସନ୍ଧାନରେ ବହୁ ତଥ୍ୟ ଓ "ଚମ୍ପକଳା" ପ୍ରକାଶନର ପ୍ରେରଣା ପାଇଥିବାରୁ ଆମେ କୃତଜ୍ଞ । ସେ ବର୍ତ୍ତମାନ ଜୀବନର ସାୟାହ୍ନରେ । କୃଷ୍ଣପ୍ରସାଦଙ୍କର କେତୋଟି ଅପାଶୋରା ସ୍ମୃତି ବାଞ୍ଛାନିଧିଙ୍କ ମନରେ ଏବେବି ଜୀବନ୍ତ ହୋଇ ରହିଛି । କୃଷ୍ଣପ୍ରସାଦଙ୍କୁ ୧୯୪୧ ମସିହାରେ ୫ ୧୦ ଙ୍କାରେ ଅଭଣା ଯାତ୍ରା ଦଳରେ ନିଯୁକ୍ତି, ବିବାହ, ପୁତ୍ର ବସନ୍ତର ଜନ୍ମ ଭଳି ସୁଧା ଶୁ ପ୍ରତି ସ୍ନେହ, ସେପାରି ବାହୁଡା ଯାତ୍ରାର ପୂର୍ବରୁ ଅଭଣା ଭ୍ରମଣ ବର୍ଣ୍ଣନା ଏବେବି ତାଙ୍କ ଚକ୍ଷୁରେ ଲୁହର କାହାଣୀ ହୋଇ ରହିଛି ।

ପରି ଶେଷରେ ନଳାଙ୍ଗର ଶ୍ରୀ ବିଶ୍ୱନାଥ ତ୍ରିପାଠୀ, ଶ୍ରୀ ପ୍ରଜାପତି ପଣ୍ଡା ଶ୍ରୀମତୀ ସୁବର୍ଣ୍ଣ ଦେବୀ ଙ୍କ ଠାରୁ କବିଙ୍କ ସନ୍ଧାନରେ ଅନେକ ତଥ୍ୟ ପାଇ ଥିବାରୁ ଆମେ କୃତଜ୍ଞ । ଶ୍ରୀମାନ ବସନ୍ତ ସ୍ୱର୍ଗତ ପିତାଙ୍କର "ଫଟୋ" ଆମକୁ ନିର୍ବିକାର ଚିତ୍ତରେ ସମର୍ପଣ କରି ସଂକଳନ ଟିକୁ ସର୍ବାଙ୍ଗ ସୁନ୍ଦର କରିବାରେ ସାହାଯ୍ୟ କରିଛି ।

ସଂକଳନ ଉଦ୍ଦେଶ୍ୟରେ ଆମେ ପ୍ରାୟ ୩୦୦୦ ଗୀତ କବିତା ଓ ଅନେକ ଗଦ୍ୟନାଟ୍ୟ ସଂଗ୍ରହ କରିଥିଲେ ମଧ୍ୟ ଉଦ୍ଦିଷ୍ଟ ପୁସ୍ତକରେ ମାତ୍ର୧୩୬ଟି ଗୀତ କବିତା ସନ୍ନିବିଷ୍ଟ ହେଲା । ପରେ ସମୟ ଓ ସୁଯୋଗ ପାଇଲେ ଅନ୍ୟ ଗୀତ କବିତା ଓ କବି ଜୀବନର ନାନା ତଥ୍ୟ ବିଶଦ୍ କବି ଜୀବନୀ ମୁଦ୍ରିତ ରୂପରେ ପ୍ରକାଶ କରିବାର ବାସନା ରଖିଲୁଁ । କାଗଜର ଉଚ୍ଚଦର ଓ ମୁଦ୍ରଣର ବହୁ ମୂଲ୍ୟକୁ ଆଖି ଆଗରେ ରଖି ସଂକଳନର କଳେବର ବଢାଇଲେ ଏହା ପାଠକର କ୍ରୟଶକ୍ତିର ବାହାରକୁ ଚାଲିଯିବ-ଏହି ଆଶଙ୍କାରେ ଅଧିକ ପ୍ରୟାସ କଲୁ ନାହିଁ ।

ସଂକଳକ

ଦୋଳପୂର୍ଣ୍ଣିମା

୬ । ୨୧ । ୪ : ୮୧

ଡ଼କ୍ଟର ଭଗୀରଥି ନାୟକ (ମଙ୍ଗଳପୁର)

ଭାସ୍କର ଚନ୍ଦ୍ର ଅଗସ୍ତୀ (ଅଭଣା)

# ସୂଚୀ-ପତ୍ର

ବିଷୟ | ପୃଷ୍ଠା



## ଉଦ୍‌ବୋଧନୀ

ବିଷୟ ପୃଷ୍ଠା

## ପଲ୍ଲୀ ସଂଗୀତ

| ବିଷୟ | ପୃଷ୍ଠା |
|---|---|



## ଲଘୁ ସଂଗୀତ

| ବିଷୟ | ପୃଷ୍ଠା |
| --- | --- |


ଅନ୍ୟାନ୍ୟ

| ବିଷୟ | ପୃଷ୍ଠା |
| --- | --- |
| ୩। ଗୁମାନରେ ଗଣ୍ଠି ଖୋଲ | ୧୭୨ |
| ୪। ଗୋଟିଏ ଡାଳରେ ଆମେ | ୧୭୩ |
| ୫। ନର୍ଦ୍ଧମା ପାଖେ ବାରବୁଲଲୋଟେ | ୧୭୪ |
| ୬। ନଦ ଭାଗି ଂଦେଇ ଉଠ୍ ମୋ କୁନା | ୧୭୬ |
| ୭। ନବଢ଼ି ନରଦ ନଶି | ୧୭୭ |
| ୮। ତମସା ଶର ଆଲୋକ ସ୍ରୋତ | ୧୭୮ |
| ୯। ବୁଢ଼ା ବରଗଛ ମୁହିଁ | ୧୭୯ |
| ୧୦। ଭାଗ୍ୟ ମନ୍ଦ ବେଳେ | ୧୮୧ |
| ୧୧। ରଜନୀରେ ସଜନୀରେ | ୧୮୨ |
| ୧୨। ଶିଶିର ଅଇଲା ଆଦ୍ୟ ମାର୍ଗଶୀର ମାସ | ୧୮୩ |
| ୧୩। ଶେଷ ତେଜ ବରଜ | ୧। ୫ |
| ଶୁଦ୍ଧିପତ୍ର | ୧୮୬ |



# ଜୀବନ ପରିକ୍ରମା

ଓଡ଼ିଶାର ଅପେରା ଆନ୍ଦୋଳନକୁ ନୂଆ ଜୀବନ ଦେବାରେ ଯେଉଁମାନେ ନିସ୍ବାର୍ଥପର ଉଦ୍ୟମ କରିଛନ୍ତି ସେମାନଙ୍କ ମଧ୍ୟରେ ପଲ୍ଲୀକବି କୃଷ୍ଣ ପ୍ରସାଦ ବେହେରା ଅନ୍ୟତମ । ଗୋଟିଏ ଅତି ସାଧାରଣ ପରିବାର ଭିତରେ ଜନ୍ମଗ୍ରହଣ କରି କୃଷ୍ଣପ୍ରସାଦ ଅସାଧାରଣ ପ୍ରତିଭାର ଅଧିକାରୀ ହୋଇ ପାରିଥିଲେ । ଏହି ପ୍ରତିଭାଧର ଗୀତି କବି ୧୯୧୭ ମସିହାରେ ଭଦ୍ରକ ସବ୍‌ଡିଭିଜନର ମୂଳଗାଁରେ ଜନ୍ମଗ୍ରହଣ କରିଥିଲେ । ପିତା ପୁରୁଷୋତ୍ତମ ବେହେରା ଥିଲେ ଜଣେ ସାଧାରଣ ଗୃହସ୍ଥ । ପୁତ୍ରର ଶିକ୍ଷା ପ୍ରତି ସେ ବିଶେଷ ଧ୍ୟାନ ଦେଇ ପାରି ନଥିଲେ । କୃଷ୍ଣ ପ୍ରସାଦଙ୍କ ଶିକ୍ଷାଗତ ଯୋଗ୍ୟତା ପ୍ରାଥମିକ ସ୍ତରରେ ହିଁ ଶେଷ ହୋଇଥିଲା । ବସ୍ତୁ ଦରିଦ୍ରା ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ବେଳେ ମାତ୍ର ୧୦ ବର୍ଷ ବୟସରେ ତାଙ୍କ ମାତା ଇହଧାମ ତ୍ୟାଗ କରିଥିଲେ । ତା'ପରେ କିଶୋର କୃଷ୍ଣ ପ୍ରସାଦ "ଅର୍ଜୁନ ଗୁନ୍ଦ ଅପେରା ପାର୍ଟି"ରେ ସାଧାରଣ କଳାକାର ଜୀବନ ଆରମ୍ଭ କରିଥିଲେ । ହେଲେବି ବୁଢ଼ି ପରରୁ ବାରିଲା ଭଳି କୃଷ୍ଣ ପ୍ରସାଦଙ୍କ ବାଲ୍ୟ ଜୀବନରୁ ପରିଚୟ ମିଳିଥିଲା ଯେ ସେ ଭବିଷ୍ୟତରେ ଜଣେ କଳାପ୍ରାଣ ବ୍ୟକ୍ତି ହେବେ । ପ୍ରଥମେ ସେ ଏହି 'ଅର୍ଜୁନ ଗୁନ୍ଦ ଅପେରା'ରେ ସ୍ତ୍ରୀ ଭୂମିକାରେ ଅଭିନୟ କରି ନିଜ କଳା ଚେତନାର ପରିଚୟ ଦେଇଥିଲେ । ମାତ୍ର ୫ବର୍ଷର ଅଭିଜ୍ଞତା ପରେ ସେ କୋଚିଆ କୋଇଲି ଗ୍ରାମରେ ଏକ ଯାତ୍ରାଦଳର ଶିକ୍ଷକତା କରିଥିଲେ । ତା'ପରେ ସେ କୁରୁଡ଼ା ଏବଂ ଅଂଜ ଗ୍ରାମରେ ଯାତ୍ରାଦଳ ଗଢ଼ି ଗୀତ ରଚନା, ନାଟକ ରଚନା ଓ ନାଟ୍ୟ ନିର୍ଦ୍ଦେଶନାରେ ମନୋନିବେଶ କରିଥିଲେ । ଯୁବକ କୃଷ୍ଣ ପ୍ରସାଦଙ୍କ ଜ୍ଞାନତୃଷା ଅତି ପ୍ରବଳ ଥିଲା । ଅବସ୍ଥା ଚକ୍ରରେ ପିନା ସେ ଉଚ୍ଚ ଶିକ୍ଷା ଲାଭ କରି ପାରିଲେ ନାହିଁ, ମାତ୍ର ବ୍ୟକ୍ତିଗତ ଉଦ୍ୟମରେ ସେ ସଂଗୀତଶାସ୍ତ୍ର ଓ ନାଟ୍ୟକଳା ସଂପର୍କରେ ସବିଶେଷ ଅଧ୍ୟୟନ କଲେ । ଇତିମଧ୍ୟେ ସ୍ବର୍ଗତ କାଳି ଚରଣ ପଟ୍ଟନାୟକଙ୍କ "ଓଡ଼ିଶା ଥିଏଟର୍ସ" ଓଡ଼ିଶାର କଳା କ୍ଷେତ୍ରରେ ଏକ ଯୁଗାନ୍ତକାରୀ ପରିବେଶ ସୃଷ୍ଟି କରିଥିଲା । କୃଷ୍ଣପ୍ରସାଦ ମାତ୍ର କେତୋଟି ବର୍ଷ ଏହି "ଓଡ଼ିଶା ଥିଏଟର୍ସ"ରେ ଅଭିନୟ କରିବାର ସୁଯୋଗ ପାଇଥିଲେ । ଶାସ୍ତ୍ରୀୟ ସଂଗୀତ ଏବଂ ନାଟ୍ୟ କଳାର ବିଧିବଦ୍ଧ ଧାରା ସହିତ ପରିଚିତ ହେବାର ସୁଯୋଗ ସେ ଏଠାରୁ ଲାଭ କରିଥିଲେ । ୧୯୪୧ ମସିହାରେ କୃଷ୍ଣ ପ୍ରସାଦ ବାଲେଶ୍ବର ଜିଲ୍ଲାର ଅଭଣା ଗ୍ରାମକୁ ନିଜ ସାଧନାର କେନ୍ଦ୍ରସ୍ଥଳ ବୋଲି ବାଛିର କରିଥିଲେ । ଏହି ଗ୍ରାମର କଳାପ୍ରାଣ ଶ୍ରୀ ବାଞ୍ଛାନିଧି ଅଗସ୍ତିଙ୍କ ପୃଷ୍ଠପୋଷକତାରେ ଏକ ଯାତ୍ରାଦଳ ଗଠନ କରାଗଲା ଏବଂ ଏହି ଗ୍ରାମର ବହୁ ଉତ୍ସାହୀ ବ୍ୟକ୍ତି ଏଥିରେ

ଯୋଗଦାନ କଲେ । ୧୯୪୯ ମସିହା ପର୍ଯ୍ୟନ୍ତ ଦୀର୍ଘ ୧୮ବର୍ଷ କାଳ କୃଷ୍ଣ ପ୍ରସାଦ ଏଠାରେ କଳା ସାଧନା କଲେ । ଏହି ସମୟ ମଧ୍ୟରେ ସେ ବନ୍ଧୁଭାବେ ଅଭଣାକୁ ନିଜର ମାତୃଭୂମିଠାରୁ ବଳି ଅଧିକ ଭଲ ପାଉଥିଲେ । ଏହି ଗ୍ରାମର ମନୋରମ ପ୍ରାକୃତିକ ପରିବେଶ, ବ୍ୟକ୍ତିଗତ ଚରିତ୍ର, ଅନୁଷ୍ଠାନ ଓ ଦେବାଦେବୀ କବି ଲେଖନୀକୁ ବେଶ ଖୋରାକ୍ ଯୋଗାଇ ଥିଲା । ବାଞ୍ଛାନିଧି ଓ କୃଷ୍ଣପ୍ରସାଦଙ୍କ ମଧ୍ୟରେ ବନ୍ଧୁ ଆନ୍ତରିକତା ଥିଲା । ଉଭୟ ଉଭୟଙ୍କୁ ନ ଦେଖିଲେ ରହି ପାରନ୍ତି ନାହିଁ । ଶ୍ରଦ୍ଧାରେ ଦୁହେଁ ଦୁହିଁଙ୍କୁ "ଅଗସ୍ତି ଏ"—"ମାଷ୍ଟ୍ରେ" ଡକା ଡକି ହୁଅନ୍ତି । ଏହି ସମୟ ମଧ୍ୟରେ ଦୁହେଁ ଏକାଠି ବସି ଭୋଜନ କରିବାରେ ସେମାନଙ୍କର ଗୋଟାଏ ଆନନ୍ଦ ଥିଲା । ଭୋଜନ ବେଳେ ବ୍ୟଞ୍ଜନ, ବଡ଼ି, ବାଇଗଣ, କାଞ୍ଜି, ଶୁଖୁଆ, ଶାଗ ଓ ପଖାଳ ଯାହା ଖାଆନ୍ତି, ଯାହା ତାଙ୍କୁ ମଉଜ ଦିଏ, ତାହା କବି କୃଷ୍ଣ ପ୍ରସାଦଙ୍କ ଲେଖନୀରେ ରୂପ ନିଏ । ଅଧିକ ସାଧନା ପାଇଁ ଆବଶ୍ୟକ ପୁସ୍ତକ କ୍ରୟ କରିବାରେ ଯାହା ଅର୍ଥର ଆବଶ୍ୟକତା ପଡ଼େ ତାହା ବାଞ୍ଛାନିଧି ଅକୁଣ୍ଠ ଚିତ୍ତରେ ଯୋଗାଇ ଥାଆନ୍ତି । କହିବାକୁ ଗଲେ "ଅଗସ୍ତି ଏ" ଥିଲେ "ମାଷ୍ଟ୍ରେ"ଙ୍କର ପ୍ରାଣକେନ୍ଦ୍ର-ଅଗ୍ରଜ-ସାଥୀ-ଉପଦେଷ୍ଟା ସବୁକିଛି । ବାଞ୍ଛାନିଧିଙ୍କ ପରିବାରରେ କୃଷ୍ଣ ପ୍ରସାଦ ଥିଲେ ଏକାନ୍ତ ଆଦରର ବ୍ୟକ୍ତି । ବର୍ତ୍ତମାନ ସୁଦ୍ଧା ବାଞ୍ଛାନିଧିଙ୍କ ମନରେ କୃଷ୍ଣ ପ୍ରସାଦଙ୍କ ସ୍ମୃତି ଜାଗ୍ରତ ହେଲେ ବାଞ୍ଛାନିଧିଙ୍କ ନୟନରୁ ଅଶ୍ରୁ ବିଗଳିତ ହୁଏ । ପ୍ରକୃତରେ କହିବାକୁ ଗଲେ ଏହି ୧୮ବର୍ଷ ସମୟ କୃଷ୍ଣ ପ୍ରସାଦଙ୍କ ରଚନାର ଏକ ଗୌରବମୟ ଅଧ୍ୟାୟ । ଏହି ସମୟ ମଧ୍ୟରେ ସେ "ପ୍ରବୀର ପତନ", "ପ୍ରତିଜ୍ଞା ପାଳନ", "ମାନ୍ଧାତା", "ଜଳନ୍ଧର", "କର୍ଣ୍ଣଦାନ", "କୃଣଧ୍ୱଜ", "ଅଦୃଷ୍ଟ", "ଉର୍ବଶୀ", "ଅସବର୍ଣ୍ଣୀ", "ହରିଶ୍ଚନ୍ଦ୍ର" "ଦୈବ ଚକ୍ର", "ଅଛୁଆଁ ଦେବତା", "ପ୍ରତିଦାନ", ପୁଣ୍ୟଭୂମୀ", "ରାଜ ଦ୍ରୋହୀ" ଭଳି ୧୮ ଗୋଟି ନାଟକ ରଚନା କରିପାରି ଥିଲେ ।

ଅଭଣାରେ ଅବସ୍ଥାନ କାଳରେ ସେ ଗୁଣ୍ଡିପିତାମ୍ବର (ମଙ୍ଗଳପୁର) ଠାରେ ମଧ୍ୟ ଏକ ଯାତ୍ରା ଦଳ ଗଠନ କରିଥିଲେ । ଶ୍ରୀ ଭୂପେନ୍ଦ୍ର ପ୍ରସାଦ ପଣ୍ଡା ଥିଲେ ଏହି ଯାତ୍ରା ଦଳର ପୃଷ୍ଠପୋଷକ । ମଙ୍ଗଳ ପୁର ଯାତ୍ରା ଦଳର ସଙ୍ଗୀତ ଶିକ୍ଷକ ଶ୍ରୀ ଚିନ୍ତାମଣି ନାୟକ ଓ ଅଭଣା ଯାତ୍ରା ଦଳର ଦୟାନିଧି ତ୍ରିପାଠୀ (ନିଧିବାବୁ) ଗଜେନ୍ଦ୍ର ତ୍ରିପାଠୀ ଓ କୈଳାସ ଚନ୍ଦ୍ର ପତିଙ୍କ ସକ୍ରୀୟ ଉଦ୍ୟମ ଫଳରେ କୃଷ୍ଣପ୍ରସାଦଙ୍କ ସ୍ୱର ସଂଯୋଜନା ବିଭୁଭାବେ ବିକଶିତ ହେବାକୁ ଲାଗିଲା । ମଙ୍ଗଳ ପୁରଠାରେ ସେ ମାତୃ-ମୁକ୍ତି, ଶଙ୍ଖଚୂଡ଼, "ନାରୀ ଜାଗରଣ" "ଗଣଶକ୍ତି" ଭଳି ନାଟକ ରଚନା କରି ଓଡ଼ିଶା ଏବଂ ଓଡ଼ିଶା ବାହାରେ ଅପନେ ଯଶର ଅଧିକାରୀ ହୋଇପାରିଥିଲେ ।

ଅଭଣା ଏବଂ ମଙ୍ଗଳପୁର ଅପେରା ପାର୍ଟି ଭାଙ୍ଗିଯିବା ପରେ ପରେ କୃଷ୍ଣ ପ୍ରସାଦ ବେହେରା ଗୁଡ଼ି, ଜିରତାଳ, ଝଗିରୀ ପଦା, ଫତେପୁର, ଝଲଝଲିଆ,

କଲ୍ୟାଣପୁର, ସାରୁଅ, ବଛଡ଼ା, ନଲାଙ୍ଗ ଓ ତାଳପଦାଠାରେ ଯାତ୍ରାଦଳ ଗଠନ କରି ଶିକ୍ଷକତା କରିଥିଲେ । ଏହି ପ୍ରତିଭାବାନ ଶିଳ୍ପୀ ଚିରଦିନ ଅବସ୍ଥା ନିପୀଡ଼ିତ ଥିଲେ । ତଥାପି ସେ ସବୁକୁ ଭ୍ରୂକ୍ଷେପ ନ କରି ଗମ୍ଭୀର ଆଶାବାଦୀ ଭାବେ ଗୋଟିଏ ପରେ ଗୋଟିଏ ସଂଗୀତ ଅନୁଷ୍ଠାନ ସୃଷ୍ଟି କରି ପାରିଥିଲେ । ଆଜିର ଅପେରା ଜଗତରେ ଯେଉଁମାନେ ପ୍ରତିଷ୍ଠିତ କଳାକାରର ଭୂମିକା ନେଇଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରତ୍ୟକ୍ଷରେ ହେଉ କିମ୍ବା ପରୋକ୍ଷରେ ହେଉ କୃଷ୍ଣ ପ୍ରସାଦଙ୍କ ସଂସ୍ପର୍ଶରେ ଆସିଛନ୍ତି । ସେ ଜଣେ ନିରଳସ ସାଧକ ଥିଲେ । ତାଙ୍କ ସୃଷ୍ଟିର ମୂଲ୍ୟାୟନ ଅନ୍ୟମାନେ କରନ୍ତୁ ବା ନ କରନ୍ତୁ ସେଥିପାଇଁ ସେ ତିଳେହେଲେ ଚିନ୍ତା କରୁ ନ ଥିଲେ । ଗୀତ ରଚନା ତାଙ୍କର ଥିଲା ଏକ ପବିତ୍ର କର୍ତ୍ତବ୍ୟ । ଏହି କର୍ତ୍ତବ୍ୟରେ ଉଦ୍‌ବୁଦ୍ଧ ହୋଇ ସେ ବହୁଭାବେ ଅଭାବ ଅନାଟନର ଶରବ୍ୟ ହୋଇଛନ୍ତି ସତ୍ୟ, ମାତ୍ର କର୍ତ୍ତବ୍ୟ ବିମୁଖ ହୋଇ ନାହାନ୍ତି । ଆଜି ଅପେରା ଜଗତ ସହିତ ସାଧାରଣ ଲୋକଠୁଁ ଆରମ୍ଭ କରି ଶିକ୍ଷିତ ଲୋକେ ଯେଉଁଭଳି ସମ୍ପର୍କ ରକ୍ଷା କରିଛନ୍ତି ଦୁଇତି ୩୦ ବର୍ଷ ତଳେ ସେଭଳି ଅବସ୍ଥା ଓଡ଼ିଶାରେ ନଥିଲା । ତେଣୁ ଏହିଭଳି ଏକ ଅଭାବନୀୟ ତଥା ଦୟନୀୟ ପରିସ୍ଥିତି ଭିତରେ ସେ ଯାହା ରଚନା କରି ଯାଇଛନ୍ତି ତାକୁ ମୁଦ୍ରିତ ଆକାରରେ ଲୋକ ଲୋଚନକୁ ଆଣିବା ପାଇଁ ସେ ଅନୁକୂଳ ପରିବେଶରୁ ବଞ୍ଚିତ ହୋଇଥିଲେ । ତା' ହୋଇ ନଥିଲେ କୃଷ୍ଣପ୍ରସାଦ ଆଜି ବହୁଜନ ପ୍ରଶଂସିତ ସର୍ବାଦୃତ ଗୀତି କବିର ଗୌରବ ନେଇ ପାରିଥାନ୍ତେ । "ମଂଜୁଳା" ନାମକ କ୍ଷୁଦ୍ର ପୁସ୍ତିକାକୁ ବାଦ ଦେଲେ ଗୀତି କବିତା ଉପରେ ତାଙ୍କର କୌଣସି ପୁସ୍ତକ ଏ ଯାବତ ପ୍ରକାଶ ପାଇ ପାରିନାହିଁ । ଅଭାବର ତାଡ଼ନା ଓ ଆତ୍ମମନ୍ଥନ ଭିତରେ ଏହି ଦରିଦ୍ର ଗୀତ କବିଙ୍କର ଅକାଳ ବିୟୋଗ ଘଟି ଯାଇଛି । ଅପେରା ଜଗତରେ ଏହି ଶୂନ୍ୟତା ଆଜି ମଧ୍ୟ ପୂର୍ତ୍ତି ହୋଇ ପାରିନାହିଁ । ନିଜ ଜୀବନ କାଳ ମଧ୍ୟରେ ସେ ହଜାର ହଜାର ଗୀତି କବିତା ରଚନା କରିଯାଇଛନ୍ତି । ସେ ଗୁଡ଼ିକ ମଧ୍ୟରୁ ଅଧିକାଂଶ ଆଜି ଲୁପ୍ତ ପ୍ରାୟ । ଯେଉଁ କେତୋଟି ଲୋକ ମୁଖରେ ବୋଲି ହେଉଛି ସେ ଗୁଡ଼ିକ ପ୍ରକ୍ଷିପ୍ତ । ପୁଣି ତାଙ୍କର ଗୀତି କବିତାଗୁଡ଼ିକୁ ସାମାନ୍ୟ ପରିବର୍ତ୍ତନ କରି ନୂଆ କବିମାନେ ତାହାକୁ ନିଜସ୍ୱ ବିବେଚନା କଲେଣି । ଗଣମାନସର ଯଥାର୍ଥ ପ୍ରତିଫଳନ ତାଙ୍କ ନାଟକ ଏବଂ ଗୀତି କବିତାରେ ଦେଖିବାକୁ ମିଳେ । ସେ ସବୁର ସଂଗ୍ରହ ସଂଶୋଧନ ଏବଂ ମୁଦ୍ରଣ ହୋଇ ନ ପାରିଲେ ତାଙ୍କ ପ୍ରତିଭାର ଯଥାର୍ଥ ମୂଲ୍ୟାୟନ ସମ୍ଭବ ହୋଇ ପାରିବ ନାହିଁ । ଏକ ପ୍ରାଥମିକ ଉଦ୍ୟମ ଭାବେ ନାନାସ୍ଥାନରୁ ସଂଗୃହୀତ ତାଙ୍କର ୧୦୦ଟି ଗୀତି କବିତାକୁ ଏହି ସଂକଳନରେ ସ୍ଥାନ ଦିଆଯାଇଛି । ପରେ ତାଙ୍କର ଅନ୍ୟ ସମସ୍ତ ଗୀତି କବିତାକୁ ସଂଗ୍ରହ କରାଯାଇ ତାଙ୍କ କାବ୍ୟ ପ୍ରତିଭାର ସ୍ୱରୂପ ନିରୂପଣ ପାଇଁ ଉପଯୁକ୍ତ ଧ୍ୟାନ ଦିଆଯିବ ।

# କୃଷ୍ଣପ୍ରସାଦଙ୍କ ଗୀତି କବିତାର ପରିଚୟ

ସମୀକ୍ଷାର ମାନଦଣ୍ଡରେ ବିଚାର କଲେ ଜଣାଯାଏ ଯେ ଗୀତି କବିତାର ଧର୍ମ ହେଉଛି ସାଙ୍ଗୀତିକତା, ସଂକ୍ଷିପ୍ତତା ଏବଂ ଏକ ରୂପକତା । ଏ ଦୃଷ୍ଟିରୁ କୃଷ୍ଣ ପ୍ରସାଦଙ୍କ ଗୀତି କବିତା କାଳଜୟୀ ଏବଂ ରସୋତ୍ତୀର୍ଣ୍ଣ । ସଙ୍ଗୀତ ଶାସ୍ତ୍ରର ତାଳ, ଲୟ, ମାନ ଓ ସ୍ୱର ଆଧାରରେ କବିତାଗୁଡ଼ିକ ରଚିତ । ଏହି ଗୀତି କବିତାଗୁଡ଼ିକୁ ଆବୃତ୍ତି କଲେ ଯେଉଁଭଳି ଶ୍ରବଣ-ପ୍ରୀତି-ପ୍ରଦ ହୋଇଥାଏ, ଗୀତ ହେଲେ ସେହିଭଳି ଶ୍ରୁତି-ସୁଖକର ହୋଇଥାଏ । ତାଙ୍କର ଗୀତି କବିତାଗୁଡ଼ିକ ମୁଖ୍ୟତଃ ନାଟକ ଉଦ୍ଦେଶ୍ୟରେ ରଚିତ । ପରିବେଶ, ପୃଷ୍ଠଭୂମି ଓ ପୂର୍ବୋଦ୍ଦିଷ୍ଟ ବିଚାରରେ କବିତାର ସୃଷ୍ଟି କଳ୍ପନା କରାଯାଇଛି କବିତାଗୁଡ଼ିକ ଭିନ୍ନ ଭିନ୍ନ ରସରେ ପ୍ରଣୀତ । ତେଣୁ ରସାନୁକୂଳ ଭାଷା ଓ ଗୁଣ ଏଥିରୁ ସହଜରେ ଲକ୍ଷ୍ୟ କରାଯାଇପାରେ । ନାଟକ ପାଇଁ ଉଦ୍ଦିଷ୍ଟ ଗୀତକୁ ବାଦ ଦେଲେ ମଧ୍ୟ ତାଙ୍କର ଅନେକ କବିତା ସାଧାରଣ ଭାବଧର୍ମକୁ ଆଧାର କରି ସୃଷ୍ଟି ହୋଇଛି । ଏଥିରେ ଉଭୟ ମନ୍ମୟ ଏବଂ ତନ୍ମୟ ଗୁଣରକ୍ଷା କରାଯାଇ ପାରିଛି । ନାଟକରେ ବ୍ୟବହୃତ ହେଉ କିମ୍ବା ସାଧାରଣ ଭାବେ ହେଉ ତାଙ୍କ ରଚିତ ଗୀତି କବିତାଗୁଡ଼ିକୁ ମୁଖ୍ୟତଃ ପଲ୍ଲୀ, ଶାସ୍ତ୍ରାର୍ଥ ମୂଳକ, ଭଜନ, ଜଣାଣ, ଦେଶବନ୍ଦନା, ଉଦ୍‌ବୋଧନ ଓ ପ୍ରେମମୂଳକ ଏହିଭଳି ନାନା ଭାଗରେ ବିଭକ୍ତ କରାଯାଇପାରେ । ଆଧୁନିକ ଜୀବନର ବିଦ୍ରୋହ, ଦ୍ୱନ୍ଦ୍ୱ, ବିଦ୍ୱେଷ, ଅଭିଜ୍ଞତା, ନିଃସଙ୍ଗତାକୁ ନେଇ ରଚିତ ତାଙ୍କର ଗୀତି କବିତାଗୁଡ଼ିକ ଉଭୟ କଳା ଏବଂ ସମୟ ସଚେତନଶୀଳ ହୋଇ ପଡ଼ିଛି । ଏଥିରେ କବି ଯେଉଁ ଭାଷାର ଆଶ୍ରୟ ନେଇଛନ୍ତି ତାହା ଏବର ମଣିଷର ଭାଷା । ଭାଷାପ୍ରୟୋଗ କ୍ଷେତ୍ରରେ କବି ଏତେ ସଚେତନ ଥିଲେ ଯେ ତାଙ୍କ ରଚନା ସହିତ ପରିଚିତ ଥିବା ବ୍ୟକ୍ତି ସହଜରେ ଜାଣି ପାରିବ କେଉଁଟି ତାଙ୍କ ରଚନା ଏବଂ କେଉଁଟି ତାଙ୍କ ରଚନା ନୁହେଁ । ଛନ୍ଦ ପ୍ରୟୋଗ କ୍ଷେତ୍ରରେ କବିଙ୍କର ଅସାଧାରଣ ଦକ୍ଷତା ଥିଲା । ଗୁରୁ ଲଘୁ ବର୍ଣ୍ଣବିଭାଗରେ ଗୀତ ରଚନା କରିବାରେ କୃଷ୍ଣ ପ୍ରସାଦ ସର୍ବଦା ସଚେତନ ଥିଲେ । କିନ୍ତୁ ଅପ୍ରଚଳିତ ଗାଉଁଲି ଶବ୍ଦ ପ୍ରୟୋଗରେ କବିଙ୍କର ନିପୁଣତାର ପରିଚୟ ଦେଇଛନ୍ତି । ଗୀତି କବିତାର ସମୃଦ୍ଧିକୁ ସ୍ପର୍ଶ କଲାଭଳି ରଚନା ତାଙ୍କର ଥିଲେ ମଧ୍ୟ ପଲ୍ଲୀ କବିତା ରଚନା କ୍ଷେତ୍ରରେ ସେ ବିଶେଷ କୃତିତ୍ୱ ଅର୍ଜନ କରିପାରିଛନ୍ତି । ନିପଟ ପଲ୍ଲୀରେ ପ୍ରଚଳିତ ଢଗ, ଢମାଳୀ

ବଚନକାଙ୍କୁ ଆଧାର କରି ସେ ପଲ୍ଲୀ ଗୀତର ଚାରୁ କଳାରେ ଅପେକ୍ଷା ନକରି କୃ ନୂତନ ଜୀବନର ସ୍ୱାଦ ଦେଇ ପାରିଛନ୍ତି । 'ପଲ୍ଲୀକବି' ସମ୍ମାନ ଏକ ସ୍ୱାନନ୍ଦିତ ଉପାଧି ନୁହେଁ, ମାତ୍ର ତାଙ୍କର ଏକନିଷ୍ଠ ପଲ୍ଲୀ ଭାବନା ପାଇଁ ଅଲକ୍ଷ୍ୟରେ ଗଣଚେତନା ଭିତରେ ସେ "ପଲ୍ଲୀକବି" ର ବିଶେଷଣ ନେଇଛନ୍ତି ତାଙ୍କର ଗୀତିକବିତା :—ଭାଷାରୂପ, ଭାବନବେଦନର ରସ ଏବଂ ସଂଗୀତ ଶାସ୍ତ୍ରର ଛନ୍ଦକୁ ଗ୍ରହଣ କରି ସାଗରର ଭଳି ଅତଳ ସ୍ପର୍ଶୀ, ଆକାଶ ଭଳି ଉତ୍ତୁଙ୍ଗ ଏବଂ ସ୍ଫଟିକ ଭଳି ସ୍ୱଚ୍ଛ ହୋଇ ପାରିଛି ।

## ପଲ୍ଲୀ କବିତାର ରୂପ, ରସ ଓ ଛନ୍ଦ:—

କବିଙ୍କ ସମୁଦାୟ ଜୀବନ ପଲ୍ଲୀରେ ଅତିବାହିତ ହୋଇଛି । ତେଣୁ ପଲ୍ଲୀର ଏକ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ପ୍ରଭାବ ତାଙ୍କ ଉପରେ ପଡ଼ିବା ସ୍ୱାଭାବିକ । ତାଙ୍କ ପଲ୍ଲୀ କବିତାରେ ତିନୋଟି କଥା ସମ୍ବନ୍ଧରେ ଲକ୍ଷ୍ୟ କରିଯାଇ ପାରେ । ଯଥା :— ରୂପ (ପ୍ରକୃତି ଚିତ୍ର), ରସ (ସଂସ୍କୃତି ଚେତନା) ଓ ଛନ୍ଦ (ପଲ୍ଲୀର ଅର୍ଥନୈତିକ ଜୀବନ ଯାତ୍ରା) । ଆଲୋଚ୍ୟ ସଂକଳନରେ ସନ୍ନିବେଶିତ ପଲ୍ଲୀ କବିତା ଆଧାରରେ ଉପଯୁକ୍ତ ତିନୋଟି ବିଭାବକୁ ଆଲୋଚନା କଲେ କବିଙ୍କ ଦୃଷ୍ଟି କୋଣ କେଉଁଭଳି ସ୍ପଷ୍ଟ ତାହା ସହଜରେ ଅନୁମିତ ହୋଇଥାଏ ।

### ରୂପ:—

କବି, ଭାବୁକ ଓ ସାହିତ୍ୟିକ ସମସ୍ତେ ହେଉଛନ୍ତି ପ୍ରକୃତି ମାତାର ସନ୍ତାନ । କଳ୍ପନା-ବିଳାସୀ କବି ଚକ୍ଷୁରେ ଲହରୀ ବିଧୌତ ବେଳାଭୂମି, ପୁଷ୍ପଲତା—ଶସ୍ୟାବଳୀ ବିମଣ୍ଡିତ ବିସ୍ତୀର୍ଣ୍ଣ ସମତଳ କ୍ଷେତ୍ର, ନଭସ୍ପର୍ଶୀ ଶିଖରୀ ଓ ସୀମାହୀନ ବନସ୍ଥଳୀ କଳ୍ପନାର ଇନ୍ଦ୍ରଜାଲ ସୃଷ୍ଟି କରିଥାଏ । ଭାବନାର ପରି ପ୍ରକାଶ ପାଇଁ କେହି ତୂଳିରେ ରଂଗ ସଂଯୋଗ କରେ ତ କେହି ଭାବନାକୁ କାଳି କଲମରେ ରୂପ ଦେଇଥାଏ । କବି କୃଷ୍ଣ ପ୍ରସାଦଙ୍କ ଜୀବନର ମଧୁମୟ ସମସ୍ତ ଅଭଣା ଏବଂ ମଙ୍ଗଳପୁରରେ ଅତିବାହିତ ହୋଇଛି । ଅଭଣାର ଅଦୂରରେ ଥିବା ଲହରୀ ମେଖଳା ବେଳାଭୂମି ଓ ଶାଳ-ପିଆଶାଳ- ଅସନ ଶୋଭିତ ମଙ୍ଗଳପୁର ବନାନୀର କମ୍ର ସବୁଜ ପରିବେଶ ସହିତ ସାଧାରଣ ପଲ୍ଲୀ ଜନତାର ଆନ୍ତର ବ୍ୟବହାର, ରୀତି, ସ୍ୱିତି ନୀତି ତାଙ୍କ ମନରେ ଗଭୀର ପ୍ରଭାବ ସୃଷ୍ଟି କରିଥିବା ସ୍ୱାଭାବିକ । ସେଥିପାଇଁ "ରାହାବାଲୀ ଗାଁ ଝିଅ" ନୀଳଗିରିର କଳା ମେଘ ଦେଖି ପାଦ ଚଞ୍ଚଳ କରିଛି ଓ ଅଭଣାର 'ଭଜୁଆ ମା' ମଶାଣି ବୁକୁରେ ଭିତ ସଂସ୍କାର କରି ପଲ୍ଲୀର ନଶ୍ୱର ବେଳାକୁ ଅଧିକ

ନିସ୍ତରଂଗ କରନ୍ତି । ଧଳା ଧୂସରିତ ପଲ୍ଲୀମାଟି କବିଙ୍କର ଅତିପ୍ରିୟ । ତହାଙ୍କି କବି ଚକ୍ଷୁରେ ମାଟିର ସ୍ୱର୍ଗ । ଯୋଡ଼ି ଯାଉଁଳ ଝାମ୍ପୁରି ବରଗଛ, କଥା ଗୋହରି ଓ ତାଳ ନଡ଼ିଆର ବାହୁଙ୍କା କୁର୍ନି ଝଡ଼ ପବନର ସିତ୍କାର ପଲ୍ଲୀର ନିର୍ଜନ ବେଳାକୁ ମୁଖରିତ କରିଥାଏ । ପୁଣି ଦେଉଳ କୋଠିରୁ ଭାସି ଆସୁଥିବା ଘୁମୁର ପାରିର କରୁଣ କ୍ରନ୍ଦନ କ୍ଷଣକ ପାଇଁ ହେଲେ ବି ମନରେ ଏକ ବ୍ୟଥାର ସ୍ପର୍ଶ ଦେଇଯାଏ । ବାଉଁଶ ବଣର ଗଳି କନ୍ଦିରୁ ଡାହୁକ ଛୁଆର ଲୁଚକାଲି ଖେଳ, ଗହଳ ତୋଟାରୁ ମିଳୁଥିବା ଅଦିନର ଆମ୍ବ ପଣସ ତାଙ୍କ ଗାଁର ମଳି ମଅଳା ପିଲାଙ୍କର ଅତିପ୍ରିୟ । ଗାଆଁ ସେ ପାଖ ନାଳ ସଡ଼କରୁ ଶଗଡ଼ ତଳେ ବନ୍ଧା ମାଳିକ ମାଳ ଆଲୁଅ ମାଳ ଓ ଅନ୍ଧାର ଗୁହାର ନିଶା ଗର୍ଜନ ଭିତରେ ଚଉକିଆର କୁହାଟ ପଲ୍ଲୀର ନିଥର ପରିବେଶକୁ ଶଙ୍କିତ କରିଥାଏ । ବଣ ମାଳତୀର ମହକ ପାଇ ଚଗଲା ବାଆର ଲୁଚକାଲି ଖେଳ, ଛତି ଫୁଲର ରଙ୍ଗ ହାଟ ଓ ମଧୁ ସଂଗ୍ରହ ପାଇଁ ପ୍ରଜାପତିର ତେଣାହଲା ନାଚ ଯେଭଳି ତାଙ୍କ ଲେଖନୀରେ ମୁଖ୍ୟ ସ୍ଥାନ ଅଧିକାର କରିଛି, ମଙ୍କୁଚି ଗାଈର ପାଖେ ପାଖେ କୁନି ବାଛୁରୀର ହମାରଡ଼ି ସେହି ଭଳି ଅତି ଜୀବନ୍ତ ହୋଇ ପାରିଛି । ତେଢ଼ି ତେଉକା ସାଗୁଆ କ୍ଷେତରେ ଝିପୁରି ମେଘର ନାଚ ଓ ବେଳେ ବେଳ ଗୁଣ୍ଡୁଚି ମୂଷାର ଛନ-ଛନିଆ ଦୁବଘାସ ଉପରେ ଦଉଡ଼ କବିଙ୍କ ସାର୍ଥକ ପ୍ରକୃତି ପ୍ରୀତି ଉପରେ ଆଲୋକ ପାତ କରିଥାଏ । ପଲ୍ଲୀର ଅତି ସାଧାରଣ ରୂପ କବିଙ୍କ ଲେଖନୀରେ ଅସାଧାରଣ ରୂପ ଲାଭ କରି ପାରିଛି । ଆମ୍ବ କଡ଼ି, ଆମ୍ବ କଷି ଓ କରମଙ୍ଗା କଷିଠୁ ଆରମ୍ଭ କରି ନାଲି ପାଳଧୂଆ ଫୁଲ ପର୍ଯ୍ୟନ୍ତ ପ୍ରତ୍ୟେକ ବସ୍ତୁ କବିଙ୍କ ସଂଧାନୀ ଚକ୍ଷୁରୁ ବାଦ ଯାଇ ପାରିନି । ଓଦାମାଟି ଓ ଓଦା ଦୂବ ଘାସ ଉପରେ ଫଣାଟେକି କୁଣ୍ଡୁଳି ଚରିଲେ ଗ୍ରାମର ପରିବେଶ ଯେ କିଭଳି ମନୋମୁଗ୍ଧକର ହୋଇଥିବ ତାହା ଯେ ଆଖିରେ ଦେଖିଛି ସେ କେବଳ ରଚନାର ବିଶେଷତ୍ୱକୁ ଉପଲବ୍ଧି କରି ପାରିବ । କିନ୍ତୁ ଶଶୀ ଆକାଶରେ ଉଇଁଲେ ପ୍ରାଣ-ପ୍ରିୟକୁ ଝୁରି କଳକୂଳୀ ନଈର ମିଠା ସ୍ୱର କବିଙ୍କ ରଚନାରେ ଅତି ସ୍ୱାଭାବିକ ହୋଇ ପଡ଼ିଛି । ସ୍ୱଭାବୋକ୍ତି ଅଳଂକାରର ଆଶ୍ରୟ ନେଇ କବି ପ୍ରକୃତିର କମନୀୟ ଆଲେଖ୍ୟ ଅଂକନ କରିଛନ୍ତି—

"ଝୁରି ଝୁରି ଝରିଯାଏ ଶିଶୀ ଝଷ ଝଷ ପରବତ ଶିରେ,
ଟଳାବୂଟା ଶାଗୁଆ ଦୂବର ଡାକଦଳା ନଦୀବାଲି ତୀରେ'',

ଏହି ପଦରେ 'ଝଷ ଝଷ' 'ଟଳାବୂଟା' 'ଡାକଦଳା' ଇତ୍ୟାଦି ଶବ୍ଦର ପ୍ରୟୋଗ ରଚନାକୁ ଅତି ଉଚିତ କରିବା ସଙ୍ଗେ ସଙ୍ଗେ ବର୍ଣ୍ଣନାକୁ ଜୀବନ୍ତ କରିପାରିଛି । ଗାଁ ଘର ଜୀବନର ଛବି, ଆକାଶରେ ମେଘ ହଂସର ଯୋଡ଼ି ମହଳା ଖରା, ଦୂବକୁ

ଝାପ୍‌ସା ଦିଶୁଥିବା ପାହାଡ଼ ତଳି ଗାଁ, ଅତଣ୍ଡ଼ୀ ବଣରେ ତାହାକୁ ଛୁଆଁର ଘିବ ଗ୍ରାମର ସାମାଜିକ ରୂପରେ କାଉଁଶର ସ୍ପର୍ଶ ଦେଇଥାଏ । ସଂଜ ଆସିଲା ବେଳେ ପଲ୍ଲୀ ପ୍ରକୃତିର ନିଖୁଣ ଚିତ୍ରଟିଏ ଅଂକନ କରି କୃଷ୍ଣପ୍ରସାଦ ଯେଉଁ ସିଦ୍ଧ ହସ୍ତତାର ପରିଚୟ ଦେଇଛନ୍ତି ତାହା ଓଡ଼ିଆ ସାହିତ୍ୟର ପଲ୍ଲୀ ଚିତ୍ରରେ ଏକ ଅପାଶୋର୍ଚ୍ଚ ପଦ:—

"କଳମ ଫୁଲ ହିଦରେ ଶୁଏ ନରମ ସଂଜ ଆସେ
କଂଗ୍ରୀ କମଳା ସବୁଜ ଘାସେ ଶିଶିର ବିନ୍ଦୁ ହସେ"

କଳମ ଫୁଲ ଭଳି ଏକ ଅତି ସାଧାରଣ ଫୁଲକୁ ଏହି ପଦରେ ଯେଉଁ ବାବ୍ୟାଳ ଗୌରବ ଦିଆଯାଇଛି ତାହା କୃଷ୍ଣ ପ୍ରସାଦଙ୍କ ସୃଜନ-ଶୀଳ କବି ପ୍ରତିଭା ଉପରେ ପାଠ କରି ଦୃଷ୍ଟି ଆକର୍ଷଣ କରିଥାଏ । ଝିପି ଝିପି ବର୍ଷାର ଏକ ମନଲୋଭା ପରିବେଶ ସୃଷ୍ଟି କରି କବି କୃଷ୍ଣ ପ୍ରସାଦ ଲେଖିଛନ୍ତି :—

"ମେଘ ବରଷଇ ଟ୍ପୁରୁ ଟ୍ପୁରୁ ବେଙ୍ଗ ଅପାନାଚେ ଫୁକୁରୁ ଫୁକୁରୁ
ଚକ ଚକ ହସେ ବିଜୁଳି କନିଆ, ସୁ ସୁ ବହେ ବାଆ, ନଈରେ ଘୁଲିଛି ନାଆ" ।

ମାଲି ଧାନ ବିଲ ଉପରେ ଗୁଳି ଶଙ୍ଖଚିଲ ମନ ଆନନ୍ଦରେ ଖାଦ୍ୟ ଆହରଣ ପାଇଁ ଉଡ଼ିବୁଲେ । ବେଳେ ବେଳେ ପାଉଁଶିଆ ମେଘ ଓ ଟାଉଁଶିଆ ଖରା ଭିତରେ ଗାଁର ଦୃଶ୍ୟ ଅତି ସୁନ୍ଦର ଦେଖାଯାଏ । ଏହି ଦୃଶ୍ୟ କବିଙ୍କ ଲେଖନୀରେ କିଭଳି ଜୀବନ୍ତ ହୋଇ ପାରିଛି ନିମ୍ନ ଉଦ୍ଧୃତ ପଦରୁ ଲକ୍ଷ୍ୟ କରିଯାଇ ପାରେ:—

"ଟାଉଁସିଆ ଖରା ପାଉଁଶିଆ ମେଘ, ବରି ଚକୁଳିର ପିଠାଖିଆ ପାଗ
ଗାଁ । ମଥାନରେ ଧୁଆଁ ଚରି ବୁଲେ, କାଉ ଡାକେ କାଆ କାଆ"
ନଈରେ ଘୁଲିଛି ନାଆ ।

କବିଙ୍କ କଳ୍ପନାର ଗାଁ । ଅତି ସୁନ୍ଦର । ନିଜ ଗ୍ରାମର ଅବସ୍ଥିତି ନିର୍ଣ୍ଣୟ କରି କବି ଲେଖିଛନ୍ତି ଯେ, 'ଡିପ ଖାଲ ମାଲ ଭୂମି'ର ବହୁ ଦୂରରେ ଯେଉଁଠି ବଂଜା ବରଡାଳରେ ଗେଣ୍ଡାଳିଆ ଓ ଶଙ୍ଖଚିଲ ବସା ବାନ୍ଧନ୍ତି ସେଇଠି ତାଙ୍କର ଘର । ସେଠାରେ ପ୍ରତିଦିନ ଲଉ ଡାହି ଟେକି ମାଡ଼ିଗଲେ, ନାଲି ନେଳି ପୋଇ ରଙ୍ଗା ଦେଇ ଛପର ମଥାନକୁ ଯାଏ ଓ ସୁନା ଜହ୍ନି ଫୁଲ ଫୁଟେ ।

"ସୁନା ଜହ୍ନି ଫୁଲ ଫୁଟେ ଲଉ ଟେକେ ତାହି
ରଂଜା ଦେଇ ମାଡ଼ି ଯାଏ ନାଲି ନେଳି ପୋଇ"

କାଙ୍କଡ଼ ଧରଇ ଜଣି ବାଲଛତ୍ରୁ ଦାଏ ଦୃଷ୍ଟି, ଝଣ୍ଟି ସଙ୍ଗେ ବଡ଼ି ଆସେ ପୂରେ ନଈ ନାଳ ।

ସାଧାରଣ ବାଲିଛତ୍ରୁ ମଧ୍ୟ କବିଙ୍କ ଦୃଷ୍ଟି ସୀମାରୁ ବାଦ ଯାଇ ନାହିଁ । ଗାଁର କିଛୁ ଦୂରରେ ଥିବା ପାହାଡ଼ର ଦୃଶ୍ୟ କବିଙ୍କ ଲେଖନୀ ସ୍ପର୍ଶରେ ଜୀବନ୍ତ ହୋଇଛି । ରଂଗ ମାଟିର ଗଦା ପୁଣି ନେଳିଆ ଗଛ ଲତାର ଏହି ପାହାଡ଼କୁ ଦେଖିଲେଜଣାଯାଏ ଯେତେ ଯେମିତ ତାହା ନିଦରେ ଶୋଇଛି ଗ୍ରୀଷ୍ମଦିନର ବଣ ପୋଡ଼ି ପରେ ଗଜା ଶାଳୁଆର କଅଁଳିଆ ଛନଛନରୂପ ଓ କୋରେଇ ଫୁଲ ସହିତ କର୍ଣ୍ଣିଚ କାକୁଡ଼ି ବଣର ସାଧାରଣ ବର୍ଣ୍ଣନା ବୈଚିତ୍ର୍ୟ ପାହାଡ଼ର ରୂପଶ୍ରୀରେ ମାଦକତା ଆଣି ଦେଇଥାଏ ।

"ପୋଡ଼ି କାଳି ପୁଣି ଗଜା ଶାଳୁଆ ଲୋ କଅଁଳିଆ ଛନଛନ
କୋରେଇ ଫୁଲକୁ ଓରେଇ ଦେଇଛି କର୍ଣ୍ଣିଚ କାକୁଡ଼ି ବଣ

ଖୋଷ ରେ ବଉଳ କନିର ଫୁଲ ଖୋସି ଆଦିବାସୀ ରମଣୀର ଉଦ୍ଦାମ ନୃତ୍ୟ ଖେଳ ପାହାଡ଼ର ଗମ୍ଭୀର ପରିବେଶରେ ପୁଲକ ଆଣେ । ଏଭଳି ଦୃଶ୍ୟ ଯେ ଦେଖିଛି ସେ କେବଳ ପରିବେଶର ନିଖୁଣତାକୁ ହୃଦୟଙ୍ଗମ କରିପାରେ ।

ପଲ୍ଲୀର ସାଧାରଣ ପରିବେଶ ସହିତ କୃଷ୍ଣ ପ୍ରସାଦ ଗଭୀର ଯୋଗ ସୂତ୍ର ରକ୍ଷା କରିଥିବା ତାଙ୍କ ଗୀତ କବିତାରୁ ସୂଚିତ ହୋଇଥାଏ । ତେଣୁ ପ୍ରକାଶ ଭଙ୍ଗୀରେ ଏକ ସର୍ବଜନ ବୋଧ ଭାଷା ଓ ଭାବ ତାଙ୍କର ରଚନାଗୁଡ଼ିକୁ ସଫଳତାର ପ୍ରଲେପ ଦେଇ ପାରିଛି ।

ଲହ ଲହ ହେଁସୁଆଡ ବଗ ବସି ଧିଆନୁଛି
ଖୋଲିଛି ଝାମ୍ପୁଲ କେଶ ଖାବରା ଖଜୁରୀ
ମାଈ ସଂଜ ଗ୍ଲାଇ ଡେର୍ଣ୍ଣି କୁହୁଡ଼ି ପାଚେରୀ
ମେଘ ଚାଇଳରୁ ଜହ୍ନ ଉଠେ ଘଡ଼ମାରି ।

ହେଁସୁଆଡ ବଣରେ ବଗର ଏକ ନିଷ୍ଠ ଧ୍ୟାନ, ଖଜୁରୀ ଗଛର ଝାମ୍ପୁଲ କେଶ ଓ ଘଡ଼ମାରି ପୂର୍ବ ଦିଗରେ ଜହ୍ନ ଉଠିବା ଏ ସବୁ ପାଠ କଲା ବେଳେ ପଲ୍ଲୀ ପ୍ରକୃତିର ଏକ ଆଲୁଳାୟିତ ବେଶ ପାଠକର ଦୃଷ୍ଟି ସୀମାକୁ ନିବିଡ଼ ଭାବେ ଆକର୍ଷଣ କରିଥାଏ ।

ବର୍ଷଣ ମୁଖର ପଲ୍ଲୀ ପ୍ରକୃତି କେତେବେଳେ ଉଦାରତ ପୁଣି କେତେବେଳେ ବିକଟ ରୂପ ଧାରଣ କରିଥାଏ ଏହି ବିକଟତାକୁ ରୂପ ଦେଲା ଭଳି କବିଙ୍କ ଶବ୍ଦ ଚୟନ

କୌଶଳ ଲକ୍ଷ୍ୟ କରିବା କଥା । ରୌଦ୍ର, ଭୟାନକ କିମ୍ବା ବୀଭତ୍ସ ରସ ବର୍ଣ୍ଣନ ଅବସରରେ କବିଙ୍କ ରସାନୁକୂଳ ଭାଷା ପ୍ରୟୋଗ ସାମଗ୍ରିକ ଭାବେ ରଚନାକୁ ଭାବର ଅତି ନିକଟବର୍ତ୍ତୀ କରି ପାରିଛି ।

"ହାବୁକା ହାବୁକା ପବନ କରୁତେ ମେଘ ଝରେ ଝର ଝର
ଘଡ ଘଡ ଘଡ ଚଡ ଚଡ଼ମାରେ ଝଲେ ଛାଟି ଝାଟି ଘର
ଗାଁରୁ ଲଭୁଛି ବର୍ଷା, ଭୀଷଣ ଅନ୍ଧାର ରାତି
ବେଙ୍ଗ ହୁଲ ହୁଲି କେଁ କଟ କଟ ଝାରପୋକ ଫର ଫର"

ଘଡ ଘଡ଼ିର ବିକଟ ଶବ୍ଦ, ବେଙ୍ଗର ବ୍ୟଥିତ ସ୍ୱର ଅନ୍ଧାରିତ ପରିବେଶକୁ କିଭଳି ଆତଙ୍କିତ କରିଥିବ ତାହା ଅନୁମାନ କରାଯାଇ ପାରେ । ଖାଲି ସେତିକି ନୁହେଁ ଘୋ ଘୋ ଓ ଚବ ଚବ ପାଣି ଶବ୍ଦ, ଡମ୍ବରର ଫଁ ଫଁ ଓ ଶ୍ମଶାନରେ ଚିତା ନିଆଁର ଜୁଳୁ ଜୁଳୁ ଜ୍ୱଳନ ସହିତ ରାଗିଣୀର ଚିତ୍ର ଉପସ୍ଥାପନ କରି କବି ପରିବେଶର ଭୟାବହତାକୁ ବହୁଗୁଣିତ କରି ପାରିଛନ୍ତି । ସେହିଭଳି ପଲ୍ଲୀ ପ୍ରକୃତିର ଉଦାସ ଭାବ ଧର୍ମ ଉପରେ କବିତା ରଚନା କରି କବି ଶାନ୍ତ ରସର ଶାଳୀନତା ପ୍ରଚାର କରିଛନ୍ତି.—

"ଗ୍ରାମ ପାଖେ ଧାନ ମୁରୁଗାର ବଣ କୁନି ଶିଆଳୁଆ ବୁଲେ
ଛପି ଛପି ରୁହିଁ କଳା କୁମ୍ଭାଟୁଆ ବସିଛି ଅଁଳା ଡାଳେ"

ଚତୁର୍ଦ୍ଦିଗରେ ଧାନ ଓ ମୁରୁଗା ବଣର ନିସଙ୍ଗ ପରିବେଶରେ କୁନି ଶିଆଳୁଆର ନିଃଶଙ୍କ ବିଚରଣ ଓ ଅଁଳା ଡାଳରେ କଳା କୁମ୍ଭାଟୁଆର ହୁଁ ହୁଁ ରାବ ଯେ ନିଷ୍ଠିତ ରୂପେ ପଲ୍ଲୀ ରୂପ ଚିତ୍ର ଉପସ୍ଥାପନରେ ଏକ ସାର୍ଥକ ପଦକ୍ଷେପ ଏଥିରେ ଅଣୁ ମାତ୍ର ସନ୍ଦେହ ରହିନପାରେ ।

ଝରଣାର କୁଳୁ କୁଳୁ ନାଦ ସହିତ ନିଜ ନୃତ୍ୟରତାଣି ମିଶାଇ ମିରିଗ ଯେତେବେଳେ ମାହାଳି ପାଖର ଜଳ ଆସ୍ତରଣରୁ ପାଣି ପିଏ ସେତେବେଳେ ଏହି ସ୍ୱାଭାବିକ ଦୃଶ୍ୟ ଦର୍ଶନ ଦର୍ଶକକୁ ଅତିଶୟ ଆନନ୍ଦ ଦାନ କରିଥାଏ । ପରିବର୍ତ୍ତିତ ଅବସ୍ଥାରେ ଆଜି ସେ ଦୃଶ୍ୟ ହୁଏତ ଆଉ ଦେଖିବାକୁ ମିଳୁନାହିଁ କିନ୍ତୁ କୃଷ୍ଣ ପ୍ରସାଦଙ୍କ ରଚନାରେ ତାହା କେବଳ ସ୍ମୃତିର ବସ୍ତୁହୋଇ ରହି ଯାଇଛି । ଗହିର ବିଲରେ କାଣ୍ଡି ବଗ ସହିତ ରାଜ ବଣିର କଳି ଗ୍ରାମ୍ୟ ପରିବେଶରେ ଅତି ସାଧାରଣ କଥା । ଏହି ସାଧାରଣ କଥାଟି କବିଙ୍କ ଲେଖନୀରେ ଅତି ମର୍ମିକ ହେବାର ସୁଯୋଗ ପାଇ ପାରିଛି:—

"ଝରଣା କଡ଼ ମାହାଳ୍ ପାଖେ ମିରଗ ପିଏ ପାଣି
ଗଛର ବଳେ କାଣ୍ଡି ବଗକୁ ଖୁଆଁଚ୍ଛୁ ରାଜବଣି"

କୁଆ, କୋଇଲି, ବେଙ୍ଗ, ମିରଗ, ମାଛରଙ୍କା ଭଳି ଗାଁର ଅତି ସାଧାରଣ ପଶୁ ଓ ପକ୍ଷୀ କବିଙ୍କ ଦୃଷ୍ଟି ସୀମା ଅତିକ୍ରମ କରି ପାରିନାହାନ୍ତି । ସେମାନଙ୍କ ରୁଚି ସ୍ୱଭାବକୁ ନେଇ ସେମାନେ ଗୀତ କବିତାରେ ନିଜ ନିଜର ଆସନ ଅଧିକାର କରି ପାରିଛନ୍ତି ।

"ସାରୁ ପତର ପେଣ୍ଡିରେ ବେଙ୍ଗନାକୀ ଶୋଇଛି
ପରିହାସ ପବନରେ ଆଖି ବୁଜି ଯାଉଛି
ପାଣିର ପଞ୍ଝୁରି ଠେଲି ମାଛ ରଂକା ବୁଡ଼ିଯାଏ
ଝାଉଁବଣ ଗୀତ ଗାଏ ମଉସୁମୀ ମଦୁ ପିଇ" ।

## ରସ ଓ ଛନ୍ଦ—

ଗ୍ରାମବାସୀ ସବୁଦିନେ କଳା ପ୍ରିୟ । କର୍ମ ମୁଖର ଦିନର କ୍ଲାନ୍ତି ଅପନୋଦନ ପାଇଁ ଗ୍ରାମବାସୀ ଗ୍ରାମରେ ନାନା ଉତ୍ସବ ଅନୁଷ୍ଠାନ ପାଳନ କରି ଥାଆନ୍ତି । ଏହା ସେମାନଙ୍କର କଳା ସଚେତନଶୀଳତାର ଏକ ନିଚ୍ଛକ ମନୋଭାବ ବ୍ୟତୀତ ଅନ୍ୟକିଛି ହୋଇ ନପାରେ । ରଥ ଯାତ୍ରା, କୁଆଁରି ପୁନେଇଁ, ଦୋଳ ଯାତ୍ରା ଏ ସବୁ ଗ୍ରାମ୍ୟ ପରିବେଶରେ ଅତି ଲୋଭନୀୟ ହୋଇଥାଏ । ମାଣ ବସା ଦିନ କୁଣ୍ଡା ପିଠା ଓ ସରୁ ଝୋଟି ଚକୁଳି ଦେଇ ଲକ୍ଷ୍ମୀଙ୍କ ଆରାଧନାରେ ଗ୍ରାମବାସୀ ମନ ପ୍ରାଣ ଢାଳି ଦିଅନ୍ତି । ପ୍ରତି ଘରେ ସେଦିନ ଲକ୍ଷ୍ମୀ ପୁରାଣ ପାଠ କରାଯାଇ ଦେବୀଙ୍କର ସ୍ତୁତି କରାଯାଏ । 'ବିଚୋଳ ଲକ୍ଷ୍ମୀଙ୍କ' ଧାନ୍ୟ ଆଞ୍ଜୁଳା ଅର୍ପଣ କରି ସରଳ ଓ ନିରୀହ ଗ୍ରାମବାସୀ ଆଗାମୀ ବର୍ଷର ଶୁଭକ୍ଷେତକୁ ସ୍ୱାଗତ କରି ଥାଆନ୍ତି । ପ୍ରତି ସଂଧ୍ୟାରେ ଗାଁର ଭାଗବତ ଟୁଙ୍ଗୀରୁ ଗୀତ ଲହରୀ ଭାସି ଆସି ଗାଁର ପରିବେଶକୁ ଶାନ୍ତ କାନ୍ତ ଓ କମନୀୟ କରୁଥାଏ ।

"ସଂଜ ବେଳେ ଯେବେ ଭାଗବତ ଘରେ ଗୀତ ଗାଉଥିଲି ମୁହିଁ
କୋଣେ ବାଣ୍ଟକୁ ତ ପାଟି ଶୁଭୁଥିଲା ଲୋକେ ଆସୁଥିଲେ ଧାଇଁ ।"

ପୁଣି ମୃଦଙ୍ଗ, ମନ୍ଦିରା ଶଙ୍ଖ ଘଣ୍ଟାର ତାଳେ ତାଳେ ପଞ୍ଚକ ପୁନେଇଁର ଉଦ୍ଦଣ୍ଡ କୀର୍ତ୍ତନ ନାଚ ଗାଁର ଆଧ୍ୟାତ୍ମିକ ପରିବେଶକୁ ଗମ୍ଭୀର କରୁଥିଲା । ଝୋଟି ଓ ମୁରୁଜର ଚିତା ଅଂକନ କରି ଗାଁର ଅଶିକ୍ଷିତା ଝିଅ ବୋହୂ ସେମାନଙ୍କ ଚିତ୍ର-ରଚନାର ଦକ୍ଷତା ପ୍ରଦର୍ଶନ କରୁଥିଲେ । ଘରେ ଘରେ "ମା' ପାଦଚିତା" ଅଙ୍କନ କରି ସେମାନେ ଯେ

କେତେ ଆନନ୍ଦ ପାଉଥିଲେ ତାହା କେବଳ ସେମାନଙ୍କୁ ଜଣା । ଡୋଲ ପୂନେଇଁକୁ ଖଜା, ଚଣା, ଗଜା, ପିଠା ଗ୍ରାମ ଲୋକମାନଙ୍କର ଅତି ପ୍ରିୟ । କୁଣିଆ ଚର୍ଚ୍ଚା କରିବା ପାଇଁ ସେମାନଙ୍କ ନିକଟରେ ବା ଆଉ କେଉଁ ମୂଲ୍ୟବାନ ଖାଦ୍ୟ ଦ୍ରବ୍ୟ ରହିପାରେ ? ରଜ କମେଇ ଆସିଲେ ଅଭିଆଡ଼ୀ ଝିଅମାନଙ୍କର ଦୋଳି ଗୀତ ଚଉରେ ଉନ୍ମାଦନା ଆଣିଥାଏ । ଖାଲି ସେତିକି ନୁହେଁ ନାନା ପ୍ରକାର ପୋଡ଼ ପିଠା ଖାଇ, ନୂଆ ଲୁଗା ପିନ୍ଧି ସେମାନେ ମଧ୍ୟ ପ୍ରତିଯୋଗିତା କରି ପୁଚ ଖେଳନ୍ତି । ପୁଅପିଲା-ମାନେ ସେହିଭଳି ବୋହୁ-ବୋହୁକା, ଡିବି-ଡ଼ିବିକା, ବାଗୁଡ଼ି ଖେଳରେ ଅନେକ ଦିନ ଅତିବାହିତ କରନ୍ତି ।

ଗ୍ରାମର ବିବାହ ବ୍ରତ ଏକତ୍ର ହୋଇ ଗ୍ରାମବାସୀଙ୍କୁ କେତେ ଯେ ଆନନ୍ଦ ଦିଏ ତାହା ସେମାନେ ଜାଣନ୍ତି । ବୁଢ଼ା ନାହାକର ଜାତକ ଦେଖା ଭଙ୍ଗୀ, ମିଶ୍ର ବ୍ରାହ୍ମଣର ଚୂଟି ହଲି ମନ୍ତ୍ର ଉଚ୍ଚାରଣ ଓ ଗୋଦର ଗୋଡ଼ୀ ଭଜନା ମା'ର ଶଙ୍ଖ ଫୁଙ୍କା ଏ ସବୁକୁ ଗ୍ରାମର ଲୋକେ ଉପଭୋଗ କରନ୍ତି । ପ୍ରତ୍ୟେକ ଶୁଭ ଅନୁଷ୍ଠାନରେ ଏମାନଙ୍କର ଉପସ୍ଥିତି କାମ୍ୟ । ଏମାନଙ୍କର ଚରିତ୍ରଗତ ସ୍ୱଭାବର ଚିତ୍ର ଦେବାକୁ ଯାଇ କବି ଲେଖିଛନ୍ତି ।

"ବୁଢା ବ୍ରାହ୍ମଣ ହଲାଏ ଚୂଟି ନାହାକ କାଶେ ଖୁଁ ଖୁଁ
ଭଜନା ମା' ଗୋଦର ଗୋଡ଼ ଫୁଙ୍କୁଛି ଶଙ୍ଖ ପୁଁ ପୁଁ ।"

ଭଜନା ମା' କବିଙ୍କ କଳ୍ପିତ ଏକ ଗ୍ରାମୀଣ ଚରିତ୍ର । ସେ ସହଜରେ ଭୁଲିବା ସ୍ତ୍ରୀ ଲୋକ ନୁହେଁ । କାହା ଘରେ କେତୋଟି ମୂଷାର ଗାତ ସବୁ ତା ଜିଭ ଅଗରେ ଥୁଆ । ସରଳ ମତି କିଶୋର କିଶୋରୀ ତାଠୁଁ ବହୁ କାଳ୍ପନିକ ଗଳ୍ପଶୁଣି ସୀମାହୀନ ଆନନ୍ଦ ପାଇଥାଆନ୍ତି । ଏମାନେ ଗାଁର ଧୂଳି ମଳିର ମଣିଷ ସତ୍ୟ, ହେଲେ ବି ଗ୍ରାମ୍ୟ ସଂସ୍କୃତିର ସଜଳ ରୂପକୁ ଏଇମାନେହିଁ ଯୁଗ ଯୁଗ ଧରି ମହିମାନ୍ୱିତ କରି ଆସିଛନ୍ତି ।

ଗ୍ରାମର ଅର୍ଥନୀତି ଯେ ଅତି ଦୁର୍ବଳ ତାହା କୃଷ୍ଣ ପ୍ରସାଦଙ୍କ ରଚନା ଭିତରେ ପ୍ରତିବିମ୍ବିତ ହୋଇ ପାରିଛି । ଅଭାବ ଅନଟନର ବିକଟ 'ଆଁ' ଭିତରେ ସେମାନେ ଜୀବନର ସରସ ସବୁଜିମାକୁ ଅନେକ ସମୟରେ ଭୁଲି ଯିବାକୁ ବାଧ୍ୟ ହୋଇ ଥାଆନ୍ତି । 'ବାସୀ ପଖାଳ ଓ କୁଟା ତେନ୍ତୁଳି ମେଞ୍ଚାଏ' ସେମାନଙ୍କ ପାଇଁ ବିଧାତାଙ୍କର ଏକ ଆଶୀର୍ବାଦ ବ୍ୟତୀତ ଅନ୍ୟ କିଛି ନୁହେଁ । ଧାନ ପାଚିଲା ପରେ ପରେ ସେମାନଙ୍କର ଦୁଃଖ ପୁଞ୍ଜେ । ଗାଁ ସାହୁକାରର ଅତ୍ୟାଚାରରେ ଗ୍ରାମବାସୀ ଚିରଦିନ ଜର୍ଜରିତ । କୃପଣ ସାହୁକାର ବୁଢ଼ା ତେଲ ଟିକିଏ ଦେହରେ ମାଖେ ନାହିଁ, ତେଣୁ ଦେହରେ

ତା'ର 'ଇଲ୍ ବଲ ଖଣ୍ଡ ଗାର' ପଡ଼ି ପାରେ । ଗୌଣୀରେ ଧାନ ଟେଣ୍ଡ କରି ସେ ଖାତକଙ୍କୁ ଠକଥାଏ । ଏ ସବୁ ସତ୍ତ୍ୱେ କୃଷୀ 'ଖଉଟିଆ ଦେହକୁ କଳା କରି -ପୁଣି ଫସଲ ଅମଳ କରିବାକୁ କମର କଷିଥାଏ । କବିଙ୍କ ସାହିର ପିଲାଏ 'ମଳ ମଅଳ' । ସେମାନେ କାହିଁ ପୋଖରୀ ଗୋଳିଆ ପାଣିରେ ଗାଧୋଇ ଥାଆନ୍ତି । ଗହ୍ଵୀରୀ ଆଖିଆ ଶୁକୁଟା ଚମ ଧୁଡୁ ଧୁଡୁ 'ମେଙ୍କି ବୋଉ' ଅବସ୍ଥା ଚକ୍ରରେ ନିପୀଡ଼ିତ ସତ୍ୟ, ତଥାପି ସେମାନେ ବଞ୍ଚିବା ପାଇଁ କଠିନ ସଂଗ୍ରାମ କରନ୍ତି । କ୍ଷେତରେ କାମ କରିବାକୁ ସୁଯୋଗ ନ ପାଇ କୁଏତ କବିଙ୍କ 'ବଳଘର' ଦଳ ଟେକ କଙ୍କଡ଼ା ଧରୁଛି କମ୍ପା ସାହିଘର 'ଶୁକୁରୀ' ବନସୀ ପକଉଛି । ଶଗଡ଼ିଆ ସାହି 'ନାଡ଼ିଆ ଓଝା' ଦିନ ରାତି ଶଗଡ଼ ବୋହି ମଧ୍ଯ ଦୁଇଓଳି ପେଟ ପୂରି ଖାଇ ବାକୁ ପାଉନାହିଁ । ପଇସା ମିଳେନି ବୋଲି ବୃଦ୍ଧ ପେଣ୍ଠୀ ଅଭେଡ଼ୀ ସାଙ୍ଗ ଗାଁର ଦୁର୍ନାମ ବୋଝ ବୋହୁଥାଏ । ସେ ବିବାହ କରି ପାରେନି । ଗାଁର ଏତାଦୃଶ ଅର୍ଥନୈତିକ ଦୁଃସ୍ଥିତିରେ କବି ନୈରାଶ୍ୟବାଦୀ ନୁହନ୍ତି । ଏହି ଅବକ୍ଷୟର ଧାରା ଯେ ନଷ୍ଟ ହେବ ଓ ଗ୍ରାମକୁ ଯେ ପୁଣି ସୁଦିନ ଆସି ପାରିବ ଏଥି ପାଇଁ କବି ଗଭୀର ଆଶାବାଦୀ ହୋଇ ପଡ଼ିଛନ୍ତି । ଆଶାବାଦର ଏହି ଲଳିତ ଆଶାବରୀ ତାଂକର 'ନୂଆ ଭାରତର ଗାଆଁ' ଗୀତି କବିତାରେ ଅନୁରଣିତ ହୋଇ ପାରିଛି । ତାଂକ ମତରେ ସେ ଏ ଭଳି ଏକ ଆଗାମୀ ଗାଁର ଦୃଶ୍ୟ ଦେଖୁଛନ୍ତି ଯେଉଁ ଗ୍ରାମକୁ ପିଚୁ ସଡ଼କ ଯାଉଛି, ବିଜୁଳି ପାଣି ତୋଳୁଛି, ରାତି ଦିନ ଗାଡ଼ି ବରି, ମଟର, କୋଳଥ ଏବଂ ଧାନ ସହରକୁ ବୋହି ନେଉଛି । ସେଓ, ଅଙ୍ଗୁର, ନାସପାତି ଫଳ ବାର ମାସ ଧରୁଛି । ସଂଜୁଆ ପବନରେ ବସି ଗ୍ରାମର ସାଧାରଣ ଲୋକେ ଟେଲିଭିଜନ ଦେଖୁଛନ୍ତି ଓ ପକେଟ ରେଡ଼ିଓ କାନ୍ଧରେ ଝୁଲାଇ କୃଷୀ ଭାଇ ବିଲରେ ହଳ କରୁଛି । କବିଙ୍କ ଏହି ଦୃଶ୍ୟ ଚୟନ ଉଦ୍ଧୃତ ପଦରେ କିଭଳି ଜୀବନ୍ତ ହୋଇଛି ଲକ୍ଷ୍ୟ କରାଯାଉ—

"ଦିଶେ ଆଗାମୀ ଯୁଗର ଗାଆଁ, ଆମ ନୂଆ ଭାରତର ଗାଆଁ, ପିଚୁଢାଳା ପ୍ରତି ଗାଆଁକୁ ସଡ଼କ, ସୁଶୀତଳ ଗ୍ରୀଷ୍ମ ଫୁଲର ମହକ, ନୀଳ ବସନା ମୋ ମାଟିମା ।"

ସଭ୍ୟ 'ମଣିଷ ଗାଁକୁ ଫେରଯୋଗ ଗାଁକୁ ପୁଣି ନୂତନ ରୂପ ଦେଉ ଏହାହିଁ ଥିଲା କବିଙ୍କର ଏକମାତ୍ର ଉଦ୍ଦେଶ୍ୟ । ତେଣୁ ତାଂକ ଗୀତି କବିତାର ବହୁ ସ୍ଥାନରେ 'ଆ ମାଟିମା ଡ଼ାକୁଛି' ଏହି ସ୍ୱର ଶୁଣିବାକୁ ମିଳିଥାଏ ।

କର୍ତ୍ତବ୍ୟର ଗୁରୁ ଆହ୍ୱାନରେ ଯେତେବେଳେ କବିଙ୍କୁ ସହରାଭିମୁଖୀ ହେବାକୁ ପଡ଼ିଛି ସେତେବେଳେ ସେ ବ୍ୟସ୍ତ ଏବଂ ବିବ୍ରତ ହୋଇ ପଡ଼ିଛନ୍ତି । ମଗୁଶିର ମାସର ଧାନ ଶିଁଷା ସତେ ଯେମିତି ତାଂକୁ ପୁଣି ଗାଁକୁ ଫେରିଯିବା ପାଇଁ ବାରମ୍ବାର ଆହ୍ୱାନ

କରିଛି । ଗାଁର ସମିତି ଘରେ ଆଲୋଚନା ଚକକୁ ସେ ଭୁଲି ପାରିନାହାନ୍ତି । ଗାଁର କଳି ତକରାଳ ସେଇଠି ମେଣ୍ଟିଯାଏ । ସରଳ ନିରୀହ ଗ୍ରାମବାସୀ କୃତକର୍ମ ପାଇଁ ଅନୁତାପ କରନ୍ତି । ସହରୀ ସଭ୍ୟତାର ବିଷଜ୍ୱାଳା ସେମାନଙ୍କୁ ସ୍ପର୍ଶକରି ନଥାଏ । ବହୁ ଦୂରରେ ଥାଇ ମଧ୍ୟ ଆଁ କୁଷି ଲଗାଇ ବଦକୋଳି ତୋଳା, ଡାଳ ମାକୁଡ଼ି ଖେଳ ତାଙ୍କର ସ୍ମୃତି ପଥକୁ ଆସିଛି । ସେଥିପାଇଁ ସେ କହୁଛନ୍ତି—

'ଚକଡ଼ି ଉଆଁସ ପିଠା ଥାଳି ପିଠା ଅଖି ଆଗେ ନାଚେ ମୋ'ର' ଖେଦୁଅ ମାସର ଖୁଦୁରୁକୁଣୀ ଓଷା ମଧ୍ୟ ଗ୍ରାମବାସୀଙ୍କର ଅତି ପ୍ରିୟ । ସେମାନଙ୍କ ସହିତ ହସରେ ହସ ମିଶାଇ କବି ଏହି ପର୍ବକୁ ଉପଭୋଗ କରିଛନ୍ତି । ଫେଣ ପିଙ୍ଗି ନଈର ଲହରୀ ଯେଉଁ ଗାଁ ଗୋହିରିକୁ ଧୋଇ ନେଇଛି କବି ସେହି ଗାଁ ଦାଣ୍ଡକୁ ଜୁହାର କରି ଗାଁରୁ ସାମୟିକ ବିଦାୟ ନେଇଛନ୍ତି । ନିଜ ନିଜ ଭିତରେ ସୁଖ ଦୁଃଖ ହୋଇ ଗ୍ରାମର ଲୋକେ ତୃପ୍ତି ପାଆନ୍ତି । କୃଷିହିଁ ଗାଁର ଜୀବନ । କିଭଳି ଉନ୍ନତ କୃଷି ହୋଇ ପାରିବ ସେଥିପାଇଁ କବି ଗ୍ରାମବାସୀଙ୍କୁ କୃଷି ପ୍ରଣାଳୀ ସଂପର୍କରେ ପରୋକ୍ଷ ସୂଚନା ଦେଇଛନ୍ତି ।

"ନଈ କୂଳେ ସାରୁ ଫଳେ ସାର ଦେଲେ ପାଉଁଶ
ଗୋବରଖତେ ଗୁଆଗଛ ଅଗାଡ଼ିରେ ବାଉଁଶ ।
ଅମ୍ବ ପରି ଫେମୁଆଳୁ ଫଳେ ଖୋଳେ ଗୁଚ୍ଛକ"—

କୃଷି ସଂପର୍କରେ ଯାବତୀୟ ଡାକ ବଚନକୁ ଆଧାର କରି କବି ବହୁ ଗୀତି କବିତା ରଚନା କରିଛନ୍ତି । ଏଗୁଡ଼ିକର ପ୍ରୟୋଜନ ମୂଲ୍ୟ ଉଚ୍ଚ କୋଟୀର । ଥରେ କି ଦୁଇଥର ଏହି ପଦକୁ ଶୁଣିଲେ ତାହା ସ୍ମୃତି ପଟରେ ଅଲିଭା ଗାର ଟାଣିଦେଇଥାଏ । କଥାରେ କଥାରେ ଗାଁ ଲୋକେ ଏ ସବୁର ଉଦ୍ଧୃତି ଦେଇ ଖାଲିଯେ କାବ୍ୟିକ ବିଳାସ ପାଆନ୍ତି ତା'ନୁହେଁ ତାହା ତାଙ୍କର ଅର୍ଥନୈତିକ ଜୀବନକୁ ମଧ୍ୟ ସୁଦୃଢ଼ କରିବା ପାଇଁ ପ୍ରେରଣା ଦାନ କରିଥାଏ ।

"ମୂଳା କୃଷି ତୂଳା ପରି ଅଖୁ ଚଳି ଧୂଳାରେ
ପାଖ ଜମି ଗାଁ ଗୋରୁ ମିଳେ ଶୁଭ ବେଳାରେ" ।

କୃଷ୍ଣ ପ୍ରସାଦଙ୍କ ରଚନାରୁ ଏଭଳି ବହୁ ଉଦାହରଣ ଦିଆଯାଇ ପାରେ ।

ଗ୍ରାମରେ ତଥାକଥିତ ପ୍ରାଚୁର୍ଯ୍ୟର ବିଳାସ ନାହିଁ ସତ୍ୟ ମାତ୍ର ଅଭାବର ଶତ ତାଡ଼ନା ଭିତରେ ଯେଉଁ ମହାର୍ଘ ଅଭିଜ୍ଞତା ଅଛି ତାହା ପ୍ରାଚୁର୍ଯ୍ୟକୁ ଉପହାସ କରେ ।

ସବୁ ବରି ଚକୁଳି, କୁଣ୍ଡାପିଠା, କରମଂଗା ଜଷି, କୁଟାଚେକୁଳି, କାଠିମଗଭାତ, ସାତ ପରୁଆ କନ୍ଦି ଗୁଇତା, ଭେଣ୍ଡି ଆମ୍ବିଲ, ଶିମ ଗୁଇତା, ମନ୍ଦୁଗଲି ମାଛରେ ଆମ୍ବୁଲ ଓ କୋଳି ଆଗ୍ୱର ଅମୃତର ସ୍ୱାଦୁ ଆଣି ଦେଇଥାଏ । ପୁଣି ପଖାଳ ଓ ଆରିଷା ପିଠାର ମଜ୍ଜା ଯେ ଥରେ ଚାଖିଛି ସେ ଓଡ଼ିଆ ଘରର ରନ୍ଧୁଣୀର ହାତର କାରିଗରୀକୁ ପ୍ରଶଂସା ନକରି ରହି ପାରିବ ନାହିଁ । କବିଙ୍କ ଲେଖାମାନଙ୍କରେ ତାଙ୍କର ପ୍ରିୟ ଖାଦ୍ୟ ହେଲା—

"ଭେଣ୍ଡି ଆମ୍ବିଲ ଶାକର ଶିମ ଗୁଇତା ମନ୍ଦୁର
କଖାରୁଆ ମନ୍ଦୁଗଲି ଆମ୍ବୁଲ କୋଳି ଆଗ୍ୱର
ବଡ଼ ଲେଉଟିଆ ଭଜା ପରଷା ମୋ ମାଆର" ।

ପୁଣି ଆଖୁ ଅମଳ ସମୟରେ ଦୋରୁଅର ମିଠା ଯିଏ ଥରେ ଚାଖିଛି ଜୀବନରେ ଅନ୍ୟ ମିଠା ଖାଇବାକୁ ମନ ବଳେଇବ ନାହିଁ—

"ଖାଇଛୁ ଦୋରୁଅଟରେ ନୂଆ ଗୁଡ଼ ବାସନା
ଅତର ଚାକ୍ଷୁଣି ଖୋଲି ବନ୍ଧୁଯାଏ ଦକ୍ଷିଣା" ।

ଗ୍ରାମରେ ବାସ କରୁଥିବା ଆଦିବାସୀ ହରିଜନମାନଙ୍କ ପ୍ରତି କବିଙ୍କର ଗଭୀର ଦରଦ ଥିଲା । କୁଲୁ କୁଲିଆ ପବନର ଶିହରଣ ସେମାନଙ୍କୁ 'ଝୁଣ୍ଡା' କୁଳରେ ବେଳେ ବେଳେ ପ୍ରକୃତି ପ୍ରେମିକା କରିଥାଏ । ତେଣୁ ଝୁଙ୍ଗୁ ମାଦଳର ତାଳେ ତାଳେ ସେମାନେ କରମା ନାଚ ଆରମ୍ଭ କରିଦିଅନ୍ତି । ପଣାଖିଆ ସଂକ୍ରାନ୍ତିରେ ଏମାନଙ୍କ ନାଚ ମଧ୍ୟ ଦେଖିବା କଥା । ସେହି ପରି ପତର ସଉରାମାନଙ୍କର 'କାଠଗୀତ' ରଚନାରେ ମଧ୍ୟ କବି ସାମୟିକ ମନୋନିବେଶ କରିଛନ୍ତି । ମୁଣ୍ଡରେ କାଠଗୋଛା, ଗୋଟିଏ କାଖରେ ଛୁଆ ଓ ଅନ୍ୟ କାଖରେ ମାଠିଆ ଧରି ଆଦିବାସୀ ଯୁବତୀ ଚାଲିବାର ଦୃଶ୍ୟକୁ କବି ଅତି ନିଖୁଣ ଏବଂ ନିପୁଣ ଭାବରେ ପ୍ରକାଶ କରିପାରିଛନ୍ତି—

"ବୁହାବୁଢ଼ ବେଳ କାଠ ଗୋଛାଧରି, କାଖରେ ମାଠିଆ ଛୁଆ ବୋଝ ଧରି
ଢିପି ଢିପି ଯାଏ ଆଦିବାସୀ ମାଆ ଢିପ ଖାଲି ମାଳ ପଟରେ"

ସ୍ୱାଭାବିକତାର ସ୍ପର୍ଶରେ ଉକ୍ତ କବିତାର ଆତ୍ମିକ ସଂପଦ । ଗ୍ରାମ୍ୟ ଜୀବନରେ ଯେଉଁମାନେ ବିଷ ସଂଗ୍ରହ କରି ଭଲରେ ଭେଲି ଦେଖନ୍ତି ସେହିଭଳି ଏକ ସାଧାରଣ ବର୍ଣ୍ଣନା ଦେଇ କବି ଲେଖିଛନ୍ତି—

"ଲାଜ ସରମରେ ଚାଲି ହୁଏ ନାହିଁ ବାଟ, ଗାଧୁଆ ତୁଠରେ ଜାତି ବସେ ନିନ୍ଦା ହାଟ
ସହି ହୁଏ ନାହିଁ ତୁନି ତୁନି ସାନକଥା, କହି ହୁଏ ନାହିଁ ଛାତିର ପରିଶ ବ୍ୟଥା" ।

## ଐଶୀ ଚେତନା:—

କୃଷ୍ଣ ପ୍ରସାଦଙ୍କ ଗୀତି କବିତାରେ ଐଶୀ ଚେତନା ଅତି ମାର୍ମିକ ହୋଇ ପାରିଛି । ବୈଷ୍ଣବୀୟ ଭାବ-ଚନ୍ଦନ ଆଧାରରେ କବିତା ଗୁଡ଼ିକ ରସଘନ ହୋଇ ପାଠକର ଭକ୍ତି ଭାବନାକୁ ଉଦ୍ରେକ କରିଥାଏ । ପରମାତ୍ମାଙ୍କୁ ଲାଭ କରିବା ନିମିତ୍ତ ଜୀବର ବ୍ୟାକୁଳ ନିବେଦନ କବିତାର ଛନ୍ଦେ ଛନ୍ଦେ ପ୍ରତିଫଳିତ ହୋଇ ପାରିଛି । ଯେଉଁ ଶ୍ୟାମ ରୂପ ଦର୍ଶନ କଲେ ଭକ୍ତ ଯୁଗ ଯୁଗର ପାପ ତାପକୁ ବିସ୍ମୃତ ହୋଇ ପାରେ ସେହି 'ଡ଼ୋଳା ପ୍ରତିମା' ପାଇଁ କବି ସତେ ଯେମିତି ଆଶାୟୀ ହୋଇ ପଡ଼ିଛନ୍ତି । ଭକ୍ତି ସାଧନ ନିମିତ୍ତ କବି ପ୍ରତ୍ୟାହାର, ଧାରଣା, ଧ୍ୟାନ, ଆସନ, ଯମ ଓ ନିୟମ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । କେଶବ କବିର ଦରଦୀ ମନ ନେଇ କୃଷ୍ଣ ପ୍ରସାଦ ସୁହାସ ମାଣିକ ଝରି ମୁଖ କମଳକୁ ଯେ ଖାଲି ଧ୍ୟାନ କରିଛନ୍ତି ତା'ନୁହେଁ, ନୂଆ ନିଆଳି ଚୁଡ଼ା ଏବଂ ଲେଣ୍ଟଣି ଜୁଡ଼ା ତାଙ୍କ ଭକ୍ତ ହୃଦୟକୁ ଆକୁଳିତ କରିଛି । କବି ସେହିଭଳି ଏକ ପଦର ବନ୍ଦନା କରିଛନ୍ତି ଯାହା ପାଇଁ ଗୋପର ରାଧିକା ପ୍ରେମ ପାଗଳିନୀ ଏବଂ ଯାହାଙ୍କ ମୁରଳୀ ସ୍ୱନ ପଞ୍ଚମ ସ୍ୱରରେ ରାଧାଙ୍କୁ ଭାବ ଚଞ୍ଚଳ କରିଛି । ସେହି ମହାମହିମ ବିଶ୍ୱ ସମ୍ରାଟ ହେଉଛନ୍ତି ଅଗତିର ଗତି ଏବଂ ଏକମାତ୍ର ମୋକ୍ଷଧାମ । ଏହି ମିଛ ସଂସାରରେ ହରିନାମ ବ୍ୟତୀତ ଅନ୍ୟ ସମସ୍ତ କଥା ଅସାର । ମିଥ୍ୟା ଓ ପ୍ରବଞ୍ଚନାର ନିପୀଡ଼ନ ଭିତରେ କବି ପ୍ରାଣ ଆତୁର ହୋଇ ପଡ଼ିଛି । ଏଭଳି ଅବସ୍ଥାରେ କେବଳ ନୀଳାଚଳ ନାଥହିଁ କୈବଲ୍ୟ କଣିକା ଦାନ କରି ପାରନ୍ତି । ପୂର୍ଣ୍ଣ ଆଲୋକ ଦେଇ ପ୍ରଭୁ ପାତକୀର ପାତକ ଖଣ୍ଡନ କରି ପାରନ୍ତି ।

"ପାତକୀରେ ଦିଅ ମୁକତି ପ୍ରଭୁ ପୂର୍ଣ୍ଣ ଆଲୋକ ଦେଇ ଜୀବନ ସୁଆଦ ଯେ ହରିଲା ମୋର, ଶୁଭାଶିଷ ଦେଇ ତାକୁ କ୍ଷମା କର ପରମାଣୁ ତୁଲେ ଲୀନ କର ମୋତେ କାମନା ବାସନା ଦେଇ" ।

ଉପର୍ଯ୍ୟୁକ୍ତ ପଦରେ କବିଙ୍କର ଦାର୍ଶନିକ ଦୃଷ୍ଟିକୋଣ ଉଦ୍ଭାସିତ ହୋଇ ପାରିଛି । ପୃଥିବୀର ମଣିଷ ଭାବେ ସେ କାମନା ବାସନାକୁ ଛାଡ଼ି ବଞ୍ଚି ପାରିବେନି ସତ୍ୟ, ମାତ୍ର ଏହି କାମନା ଐଶୀ ଚେତନାରେ ରୂପାନ୍ତରିତ ହେଉ, ଏହା ସେ ଆଶାକରନ୍ତି ତାଙ୍କ ଜୀବନର ସରସ ସବୁଜିମାକୁ ଯେ ନଷ୍ଟ କରୁଛି ତା ବିରୁଦ୍ଧରେ ତାଙ୍କର ଏକମାତ୍ର ବିଦ୍ରୋହ ହେଉଛି ଶୁଭାଶିଷ ପ୍ରଦାନ କରିବା । ପ୍ରଥମ ପ୍ରଣବ ନାଦ 'ଓଁକାର' ଭିତରେ ଯାହାର ଶୁଭ୍ର ଜ୍ୟୋତି ଭକ୍ତର ନୟନ ମନ ହରଣ କରେ ସେ

ହେଉଛନ୍ତି ପୁରୁଷୋତ୍ତମ ଏବଂ ବିଶ୍ୱର ସକଳ ଶକ୍ତିର ଏକ ମାତ୍ର ଉତ୍ସ । ସେହି ପରମ ପୁରୁଷ ବେଦ ବନ୍ଦିତ ଶୁଭ୍ର ସାକାର ବ୍ୟକ୍ତିତ୍ୱ ଅନ୍ୟ କେହି ହୋଇ ନ ପାରନ୍ତି । କବିଙ୍କ ଭାଷାରେ ସେହି ନୟନାଭିରାମ ରୂପ ହେଉଛି 'ଚନ୍ଦ୍ରସ୍ଥ ଘନ ଜ୍ୟୋତି ପ୍ରକାଶ ଚିର ସୁନ୍ଦର' । ତେଣୁ ତାଙ୍କୁ ଚିନ୍ତା କରି ନ ପାରିଲେ ଜୀବନର ସୁଖ ଗୁଣେ ବଢିଲେ ଦୁଃଖ ଦଶଗୁଣ ବଢିଥାଏ । ତାଙ୍କୁ ଶକ୍ତିରେ କେହି କେବେ ବାନ୍ଧି ପାରିନି, ମାତ୍ର ଭକ୍ତିରେ ସେ ଆପେ ଆପେ ବନ୍ଧା ପଡନ୍ତି । ସେ ରୂପରେ ଅରୂପ, ପୁଣି ଅରୂପରେ ରୂପ ନେଇ ସୃଷ୍ଟିର ଲୀଳା ରଚନା କରିଥାନ୍ତି । କୁହୁ କୁହୁ ପିକ ଡାକ, ସନ ସନ ପବନ, ମହ ମହ ଫୁଲ ବାସ ଓ ତାରା ଭରା ଗଗନ ଭଳି ପୃଥିବୀର ଯାବତୀୟ ବସ୍ତୁରେ ସେ ଆତ୍ମ ପ୍ରକାଶ କରିଥାଆନ୍ତି । ମନକୁ ଉଦ୍‌ବୋଧନ ଦେଇ କବି ନିଜର ଉକ୍ତି ପ୍ରକାଶ କରି କହିଛନ୍ତି:—

"ଧନ ଜନ ସନମାନ ମନେ ଆନ ନ ଦେବୁ
ସରବ ଘଟେ ପ୍ରକଟ ସେ ମୂରତି ଦେଖିବୁ
ଭକତି ଆରତି ପୂଜା ଆରାଧନା କରିବୁ
ଭାସିଯିବୁ ମୁକତିର ନାଆରେ,' ।

କାଳ କବଳରୁ ନିଜକୁ ରକ୍ଷା କରିବାକୁ ହେଲେ ମନରୁ ମୂଢତା ବର୍ଜନ କରିବାକୁ ହେବ । ପର, ରଜ, ଶଶ, ବଦ ଏହି ଅବିନା ଗାୟତ୍ରୀ ମନ୍ତ୍ର ଜପିଲେ ମନରୁ ଅସୂୟା ଭାବ ଦୂର ହୋଇ ପାରିବ ।

କଳା ମୁହାଁ କଳା ଠାକୁରଙ୍କ ନିକଟରେ କୃଷ୍ଣ ପ୍ରସାଦ ଅଭିମାନର ଭାଷା ଉଚ୍ଚାରଣ କରି ପ୍ରୀତି ନିବେଦନ କରିଛନ୍ତି । ତାଙ୍କର ଅଭିଯୋଗ ମିଶ୍ରିତ ଭାଷାରେ ଯେଉଁ ପ୍ରେରଣା ଯେ ଅଛି ଜୀବନ୍ତ ତାହା ନିମ୍ନ ଉଦ୍ଧୃତ ପଦରୁ ସହଜରେ ଜଣାପଡେ

"ତୁମେ ଛପନ ମଣୋହି ଗିଳୁଛ ଦେଖ ଉପବାସୀ କେତେ ଜନତା ଏଇ ଅବସ୍ଥାର ତୁମେ କହୁଛ ନିଜେ ହୋଇଣ ଜଗତ କରତା ତୁମେ ଶୋଇପଡିଛକି ନିଦରେ ଟାଣ ପାଷାଣ ହେଲକି ଅନ୍ତର" ।

ଠାକୁରଙ୍କ "ସାନ ବଡ଼ ଭେଦ' ଏହି ବିଗ୍ରହର ବୃଦ୍ଧିରେ ସମଗ୍ର ଜଗତ ଯେ ଜଳି ଯିବାକୁ ବସିଲାଣି ତାହା ସେ ଜାଣି ପାରୁନାହାନ୍ତି । ତେଣୁ ତାଙ୍କୁ ସତର୍କତାର ବାଣୀ ଶୁଣାଇ କବି କହିଛନ୍ତି:—

"ହଂସା ଅନ୍ନ ସ୍ୱା ଡାଆଣୀ ଡେଉଁଛୁ ମାରେ ତତଲ ଚଟକା ରକତ" ।

ବଣ୍ଣର ଏତାଦୃଶ ଅବସ୍ଥା ବେଳେ କଳୀ ଠାକୁରଙ୍କ ଗମ୍ଭୀର ହାଦକୁ କବି ଆକ୍ଷେପ କରିବାକୁ ଦ୍ୱିଧା କରିନାହାଁନ୍ତି । ସେ ବଡ଼ ଦେଉଳରେ ଥାଇ ହସୁଥିବା ବେଳେ ଦୁଃଖୀ ଲୋକର ଆର୍ତ୍ତି ଚିତ୍କାର ତାଙ୍କ ଶ୍ରୁତି ଗୋଚର ହେଉନାହିଁ କିମ୍ବା ସେ ଛପନ ମଣୋହି ଗିଳୁଥିବା ବେଳେ ଉପବାସୀ ଜନତାର ଦୁଃଖ ତାଙ୍କମନରେ ଗମ୍ଭୀର ରେଖାପାତ କରିପାରୁ ନାହିଁ, ଏହା ଭାବି ସେ ବଳଆର ଭୂଜ କାଳିଆଙ୍କୁ ପହଡ଼ ତ୍ୟାଗ ପାଇଁ ନିବେଦନ କରିଛନ୍ତି । କବିଙ୍କର ଏହି ଆନ୍ତରିକତାର ସ୍ୱର ସମୁଦାୟ ଗୀତ କବିତାକୁ ରସ-ଉଜ୍ଜ୍ୱଳ ଓ ଭାବ-ଉଦ୍ଦେଳିତ କରି ପାରିଛି । ଏହା କବିଙ୍କ ଶୁଦ୍ଧ ଶୈଳୀ ଚିନ୍ତାର ଏକ ସାର୍ଥକ ପରିପ୍ରକାଶ ବ୍ୟତୀତ ଅନ୍ୟ କିଛି ହୋଇ ନ ପାରେ ।

## ଯୁଗ୍ମ ସଙ୍ଗୀତରେ କବି ମାନସ :—

ଦୃଶ୍ୟ କାବ୍ୟ ଦର୍ଶନ ଅବସରରେ ସାମୟିକ ଚିତ୍ତ ବିନୋଦନ ପାଇଁ ଅପେରା ଜଗତରେ ଯୁଗ୍ମନୃତ୍ୟ କିମ୍ବା ଯୁଗ୍ମ ସଙ୍ଗୀତ ପରିବେଷଣ କରାଯାଇ ଥାଏ । କୃଷ୍ଣପ୍ରସାଦଙ୍କ ରଚନା ସମୂହ ମନ୍ଥନ କଲେ ଅସଂଖ୍ୟ ଯୁଗ୍ମ ସଙ୍ଗୀତ ଦୃଷ୍ଟି ପଥକୁ ଆସିଥାଏ । ସମସାମୟିକ ସମାଜ ବ୍ୟବସ୍ଥାକୁ ବିଦ୍ରୂପ କରି କେଉଁଟି ରଚିତ ହୋଇଛି ତ ପୁଣି କେଉଁଟି ଚଳନ୍ତି ସମସ୍ୟା ଆଧାରରେ ରଚିତ । ବହୁ ଯୁଗ୍ମ ସଙ୍ଗୀତର ପୃଷ୍ଠ ପୀଠିକା ହେଉଛି ପଲ୍ଲୀମାଟି । ପଲ୍ଲୀର ଓଷା, ବ୍ରତ ପୁନଃ ପରବ କିମ୍ବା ପଲ୍ଲୀରେ ପ୍ରଚଳିତ ଲୋକ ଭାଷା ଓ ବଚନିକାକୁ ଅଶ୍ରୟ କରି ସଙ୍ଗୀତ ଗୁଡ଼ିକ ରଚନା କରାଯାଇଥିବାରୁ ଏହା ମନକୁ ସ୍ପର୍ଶ କରିଥାଏ । ଏହାର ଭାଷା ଅତି ସରଳ ଓ ନିରାଡ଼ମ୍ବର । ମନଛୁଆଁ ରାଗିଣୀ ଏହି ସଙ୍ଗୀତର ଶିଳ୍ପ ଧର୍ମକୁ ବହୁଗୁଣିତ କରିଥାଏ । ଏ ସବୁର ଭାବ ମଧ୍ୟ ଅଧିକାଂଶ ସ୍ଥଳରେ ସଙ୍କେତ ଧର୍ମୀ ।

"ଚକଟା ମାଟିରେ ପାଦ ଖସରିଇ କଳସୀ ଭାଙ୍ଗିଲୁ ସହି
ନିତ ଫୁଲ ଖୋସା ଆଖିର କଜ୍ଜ୍ୱଳ ସାଜିଥାଉ କାହାପାଇଁ"

ଯୁବକର ଏହି ଆପତ୍ତି ଜନକ ଉକ୍ତିକୁ ଯୁବତୀ ସହ୍ୟ କରି ନ ପାରେ ! ତେଣୁ ପ୍ରତି ବାଦର ସ୍ୱର ଉତ୍ତୋଳନ କରି ଯୁବତୀର ମନ୍ତବ୍ୟ ହେଲା—

"ଆମ୍ବ ପତର ମୋଡ଼ି ମୋଡ଼ିକାରେ ପଣସ ପତର ଠୋଲା
କେତେ ଦେଖାଉଛୁ ଛେଉଁକା ଛେପରି କିଏସେ ଦେଖୁଛି ଭଲା"

ସାହୁକାର ଘରର ସେରନ୍ଧ୍ରୀ ଝିଅ "ଧାନମାଣ ମୂଲ'ର କାନ ଫୁଲ ଯୁବକଠାରୁ ଆଶା କରନ୍ତି । ସେ ଆଶା କରେ ଆହୁରି ଅନେକ କିଛି । କଅଁଳ କାକୁଡ଼ିର ବଢ଼ିଲା ଗ୍ରେପା ତଳେ ଲୁଚିଥିବା ଶସ ଭଳି ଯୁବତୀର ମନଗହନରେ ଲୁଚି ରହିଛି ପ୍ରେମର ଅସରନ୍ତି କାହାଣୀ । ମାଣବସା ଦିନ ସବୁ ବଣଚକୁଳି ଦେଇ ପଧାନ ଝିଅ ପାଇଁ ଯେଉଁ ହସର ଧାର ସେ ଛୁଟାଇ ଥିଲା ତାହା ଏବେବି କୁଳୁ କୁଳୁ ନାଦରେ ମନରେ ରାସ ରଚନା କରୁଛି । କେତେ ଅଶାନ୍ତ ଆଶାର ସୀମାଡ଼େଇଁ ସେମାନେ ଯାହା ଚାହାନ୍ତି ତାହା ସମାଜ ତାଙ୍କୁ ଦେଇ ପାରେ ନା । ତେଣୁ ସେମାନେ ପ୍ରତୀକ୍ଷମାଣ ହୋଇଛନ୍ତି 'କହୁ ନଟମଲ ବସନ୍ତ ପୁନେଇଁ ଆସୁଛି ହୋଟ ଯାତରା'କୁ ।

"ପୁନି-ପୁନିଅାଁ" ଯୁଗ୍ମ ସଂଗୀତର ଶିଳ୍ପ ବିଭବ ଅତି ଉଚ୍ଚ କୋଟୀର-ଧୂଳି ବାଲିରେ ସେମାନେ ଗଢ଼ିଛନ୍ତି ଶ୍ରେଷ୍ଠ ସଉଗଟିଏ ଯେଉଁଠି ପୁନି ବୋହୂ ହୋଇ ଢିଙ୍କିରେ ଧାନ କୁଟିଛି, ବଟୁଆରୁ ପାନ ଭାଙ୍ଗିଛି, ଶାଗ ମୁଗରେ ଡାଲି ରାନ୍ଧିଛି ଆଉ ଯୋଗ୍ୟା ହୋଇ ଉଜୁଡ଼ି ଯାଇଥିବା ଘରକୁ ସଜାଡ଼ି ଦେଇଛି—ପୁନିଅାଁ କିନ୍ତୁ ପୁନିକୁ ଚଢ଼େଇବା ପାଇଁ ମିଥ୍ୟା ଉକ୍ତିର ଆଶ୍ରୟ ନେଇ କହୁଛି—

"ହଳକୁ ଯିବ ବଳଦ ନେଇ, ଚଞ୍ଚଳ ଦେ ପଖାଳ ବାଢ଼ି,
ଘରଣୀ ଯଦି ଅଯୋଗ୍ୟା ହେଲୁ କି ଘର ଆଉ କରିବି ମୁହିଁ" ।

ବିଚାରି ପୁନିଅାଁ ପୁନିପାଇଁ ହାରି ମାଳାର ଉପହାର ଦେଇନି, ଦେଇଛି ମାତ୍ର ଫୁଲ ଫୁଲିଆ ଚଉଡ଼ା ଧଡ଼ିର ଏକ ଶାଢ଼ୀ, ଅଳତା, କାଚ ଓ ଶିଙ୍ଗ ପାନିଆ ।

ଏହି ଯୁଗ୍ମ ସଂଗୀତ ମଧ୍ୟରୁ କେତେକ ଅତି ଲଘୁ ସତ୍ୟ, ହେଲେ ଏହାର ଆବେଦନଶୀଳତାକୁ ଉପେକ୍ଷା କରାଯାଇ ନ ପାରେ । ଗୋଟିଏ ନିର୍ଦ୍ଦିଷ୍ଟ ବୟସର ବ୍ୟକ୍ତିମାନଙ୍କୁ ଯେ ଏହା ଆନନ୍ଦ ଦେବାକୁ କ୍ଷମ ଏଥିରେ ସନ୍ଦେହ ନାହିଁ । ବୟସର ଏକ ନିର୍ଦ୍ଦିଷ୍ଟ ଧାପ ଡ଼େଇଁ ଗଲେ କିଶୋର-କିଶୋରୀ ଅନ୍ତରରେ ଯେଉଁ ଭାବ ଆସେ ସେହି ଭାବନାର ଏକ ମନ ଛୁଆଁ ଭାଷା ଓ ଭାବ ଏହି ଯୁଗ୍ମ ସଂଗୀତରେ ଦିଆଯାଇ ପାରିଛି "ଗୁଣ୍ଡି ପାନ ଖାଇଲୁ ତୁ ଏତେ କିଆଁ ଖାଇଲୁ—ଅଧର ପଚାଇଲୁ ଫାଳି ପୋଟଳ ନୟନେ ଏତେ କଳା ନାଇଲୁ, ଫେରି ଫେରି ଚାହିଁଲୁ" ନିର୍ଜନରେ ପର ଝିଅର ହାତ ଧରିବା ଶିଷ୍ଟାଚାର ନୁହେଁ ବୋଲି କହିଲା ପରେ ବି ଯୁବକ ଉଦ୍ଦାମ ଯୌବନର ଜୟଗାନ କରି ଯେଉଁ ଏକ ଲଘୁ ସଂଗୀତର ଆଶ୍ରୟ ନେଇଛି ଏଥିରେ ଉଭୟ ଆଲମ୍ବନ ଏବଂ ଉଦ୍ଦୀପନ ବିଭାବ ଅଳଂକାର ଶାସ୍ତ୍ର ସମ୍ମତ ହୋଇ ପାରିଛି ।

"ଭୁଲି ମେଘ ପେଟତଳେ ଜହ୍ନ ଲୁଚି ଯାଉଛି ଲେ ପକ୍ଷୀ ଡାକ ଦେଉଛି କେତେ ଭଲ ଲାଗିବ ପା, ଆ ଧୀରେ ଆଉଜି, ବାଆ ବନ୍ଧ ଯାଉଛି" ଏଥିରେ 'ଫାଳି ପୋଟଲି ନୟନ', 'ଭୁଲିମେଘ ପେଟ ତଳେ' ଏହି ପଦ ଗୁଡ଼ିକ ରଚନାର ଭାବ ମୂଲ୍ୟକୁ ଉଦ୍ଦୀପ୍ତ ଓ ରସଘନ କରି ପାରିଛନ୍ତି।

ଏହି ଲଘୁପ୍ରେମ କବିତାର ସ୍ଥାନେ ସ୍ଥାନେ ମନୋବିଜ୍ଞାନର ବିଶ୍ଳେଷଣ ମଧ୍ୟ ଦେଖିବାକୁ ମିଳିଥାଏ । ଯୁବତୀର ଗାଧୁଆ ବେଳେ ଯୁବକର ପୋଖରୀ ତୁଠକୁ ଯିବା ହେଉ କିମ୍ବା ଯୁବକର ଉପସ୍ଥିତିକୁ ଲକ୍ଷ୍ୟରଖି ଶାଢ଼ିକାନି ଫିଟିଯିବା ହେଉ ଉଭୟଙ୍କ ପ୍ରତିଟି କାର୍ଯ୍ୟ କଳାପରେ ଅପରକୁ ଆକର୍ଷଣ କରିବାର ଏକ ପରୋକ୍ଷ ଇଙ୍ଗିତ ଲୁଚି ରହିଥାଏ । ସେଥିପାଇଁ କୃଷ୍ଣପ୍ରସାଦ ମତ ବ୍ୟକ୍ତ କରି କହିଛନ୍ତି—

"ନାରୀ ନଜେ ଦୋଷ ନେଇ ପୁରୁଷଙ୍କୁ ଦିଅନ୍ତି" ।

ପୁଣି 'ଏଜଫୁଲି ବାସୀ ହେଲେ ପୀରତି ଲାଗେ ପିତା' କହି କବି ପ୍ରେମ ଜାଣୀୟ ଅତି ସାଧାରଣ କଥା ଉପରେ ଆଲୋକପାତ କରିଛନ୍ତି ।

ଆଧୁନିକ ପାଠ ପଢ଼ୁଆ ଯୁବକର ବୃଦ୍ଧ ପିତାଙ୍କ ପ୍ରତି ଦୁର୍ବ୍ୟବହାରର ସୂଚନା ଦେବାକୁ ଯାଇ ଯୁଗ୍ମ ସଙ୍ଗୀତରେ କବି ପ୍ରକାଶ କରିଛନ୍ତି—

"ପୁଅ ବାହାକରି ବୋହୂ ଆଣିଥିଲି ତା ଗୁଣ କହିବି କସ,
ଘୁଙ୍ଗୁର ବାନ୍ଧି ସେ ଖେମଟା ନାଚୁଛି ଘର କାମ ତାକୁ ବିଷ ।

× × ×

ସ୍ତ୍ରୀ' ନହେଲେ ତ ବୋହୂ ସାଆନ୍ତାଣୀ ବିଛଣାରୁ ଉଠୁ ନାହିଁ,
ନିତି ଆସୁଛନ୍ତି ପାଞ୍ଚ ଦଶ ଜଣ ସମସ୍ତେ ଧରମ ଭାଇ" ।

ସମାଜ ବ୍ୟବସ୍ଥାର ଏହି ଅବକ୍ଷୟୀ ଚିନ୍ତା କବିଙ୍କର ଅନ୍ୟ ଯୁଗ୍ମ ସଙ୍ଗୀତ ଗୁଡ଼ିକରେ ଜୀବନ୍ତ ହୋଇ ପାରିଛି ।

## ବିପ୍ଲବର ଅଗ୍ନିମନ୍ତ୍ର :—

କୃଷ୍ଣପ୍ରସାଦଙ୍କ ବହୁ ଗୀତ କବିତା ବିପ୍ଳବର ସ୍ୱାକ୍ଷର ବହନ କରିଛି । ଯୁଗ ଯୁଗର ପ୍ରଚଳିତ ମୂଲ୍ୟ ବୋଧ କ୍ରମେ ପରିବର୍ତ୍ତିତ ହେବା ଫଳରେ ସାମାଜିକ ଜୀବନ କ୍ରମେ ଚୂର୍ଣ୍ଣ ହୋଇ ପଡ଼ିବା ଦେଖି କବି ବିଦ୍ରୋହୀ ହେବାକୁ ବାଧ

ହୋଇଛନ୍ତି । ରାଜନୀତିକ ପରି ଘୂର୍ଣ୍ଣନ, ସାମାଜିକ ଅବ୍ୟବସ୍ଥା ଓ ଅର୍ଥନୀତିକ ଦୂରବସ୍ଥିତିର ଚିତ୍ର ତାଙ୍କ ରଚନାରେ ଅତି ଜୀବନ୍ତ ହୋଇ ପାରିଛି । ଧନୀ ଓ ଦରିଦ୍ରର ସମ୍ପର୍କ କ୍ରମେ ତୀବ୍ରହୋଇ ଯେଉଁ ଏକ ଅଶାନ୍ତ ବାତାବରଣର ସୂତ୍ରପାତ ହୋଇଛି ତାହାକୁ କୌଣସି ସୃଜନ ଶୀଳ ସ୍ରଷ୍ଟା କେବେହେଲେ ବରଦାସ୍ତ କରି ନ ପାରେ । ବାର ଦୁଆରେ ଭିକ୍ଷା ମାଗୁଥିବା ଅସହାୟ ଭିକାରୀ ଧନୀର ଯୋତା ମାଡ ଖାଏ । ପାପୁଲିରେ ଲୁଣି ଲୁହ ସଞ୍ଚୟ କରି ବି ସେ ପୁଞ୍ଜିପତିର ଖିଆଲ ଭାଙ୍ଗିବାକୁ ସମର୍ଥ ହୋଇ ପାରେନି । ବରଂ ଉଦ୍ଧତ ମନ୍ତବ୍ୟ ପ୍ରକାଶ କରି ଧନୀ କହେ—

"ଯୋତାରେ ବାଡେଇ ପିଟି ଧନୀ କହେ କରି ପାଟି
ମୋ ଚପଲ ଦାଗ ହେଲେ ମାଡ ଦେବ ଆହୁରି ।"

ସମାଜର ଏହି ଅବକ୍ଷୟରେ କବି ମନ ବ୍ୟଥିତ ହୋଇ ପଡିଛି । ସର୍ବହରାର ଅବସ୍ଥା ନିପୀଡ଼ିତ ଜୀବନର ଚିତ୍ର ଅଙ୍କନ କରି କବି ସେଥିପାଇଁ ଲେଖିଛନ୍ତି:—

"ପାପୁଲିରେ ଲୁଣି ଲୁହ ଜଳେ ପେଟ ଥରେ ଦେହ
ବେମାରିଆ ରାତି ଆସେ ଚଢ଼ି ମେଘ ସୁଆରି" ।

ଧନ ତାନ୍ତ୍ରିକ ସମାଜ ବ୍ୟବସ୍ଥା ସମଗ୍ର ଦେଶରେ ଯେ ଏକ ହାଁ ହୁତାଶମୟ ପରିବେଶ ସୃଷ୍ଟି କରିଛି ସେଥିପ୍ରତି କବି ସତର୍କ ରହିଛନ୍ତି । ଶ୍ରେଣୀସଙ୍ଘର୍ଷକୁ କବି ଘୃଣା କରି ପୁଞ୍ଜିପତି ଶାସନକୁ ଶକୁନ ଶାସନ ନାମରେ ନାମିତ କରିଛନ୍ତି । ଦେଶର କୌଣସି ଶାସନ ବ୍ୟବସ୍ଥା କେବେ ହେଲେ ଖିଆଲ ଉପରେ ବଞ୍ଚି ରହି ପାରେନା । ଏହାର ଅବସାନ ନ ହେଲେ ଦେଶ ରସାତଳଗାମୀ ହେବ ବୋଲି କୃଷ୍ଣପ୍ରସାଦ ଭବିଷ୍ୟତ ବାଣୀ ପ୍ରଚାର କରିଛନ୍ତି ।

"ନର୍ଦ୍ଦମା ପାଖେ ବାରବୁଲା ଲୋକେ ହାଇମାରେ ବସି ବଣିକ
ଶକୁନ-ଶାସନ ଅବସାନ କର ଯୁଗର ଏ ଦାବୀ ଶାସକ" ।

ଶାସକ ଓ ପୁଞ୍ଜିପତିର ସ୍ୱାର୍ଥ-କାତର ଲୁବ୍ଧ ନୟନ ଗରିବର ଫୁଲ-ଫସଲ ଯେଉଁ କୃଷି ଜମି ଉପରେ ନିବଦ୍ଧ ହୋଇଛି । ସେଥିପାଇଁ ସେମାନେ କୋକୁଆ ଡରରେ ଭକୁଆ ହେଲେଣି । ଗରିବଙ୍କ ପାଇଁ ପ୍ରତି ମୁହୂର୍ତ୍ତରେ ମୃତ୍ୟୁର ପହଡ଼ ଚାଲିଥିଲା ବେଳେ ପୁଞ୍ଜିପତି ଅଳସ ବିଳାସ ଭିତରେ ଜୀବନ ଅତି ବାହିତ କରୁଛି । ସମାଜରୁ ଏହି ନକଲି ଆବରଣ ଖୋଲି ଦେବାପାଇଁ କବି ବିପ୍ଳବର ଅଗ୍ନିମନ୍ତ୍ର ପ୍ରଚାର କରିଛନ୍ତି । ଗଣ କବିର ଭୂମିକା ନେଇ କୃଷ୍ଣପ୍ରସାଦଙ୍କ ଏତାଦୃଶ ବର୍ଣ୍ଣନାର ଚିତ୍ର ଯେଭଳି ମର୍ମସ୍ପର୍ଶୀ, ସେହିପରି ଯୁଗୋପଯୋଗୀ ହୋଇ ପାରିଛି ।

"ଖେଦ ଆସେ ଶୋକ ନିଃଶ୍ୱାସ ଛନ୍ଦ ଉଠେ
ଭୋକିଲା ଜନତା ଶୃଙ୍ଖଳ ଓଠରୁ ଫୁଟେ
ଦାରୁଣ ଅଭାବ ମିଳୁନାହିଁ ତେଲ ଲୁଣ,
ଲୁହ ଲହରୀରେ ଗାଳି ଉଠିଲାଣି ଫେଣ,
ପାପ ଲଭି ଏବେ ଜୁଇ ନିଆଁ ଜଳେ ଦେଖ ଏ ନରକ ଛବି" ।

ସମାଜ ଜୀବନରେ ଏହି ବଡ଼ ପଶୁମାନଙ୍କର ନିଷ୍ଠୁର ଦଉରାତ୍ମ୍ୟକୁ ଆଉ କ୍ଷମା ଦିଆଯାଇ ନ ପାରେ । ଭୋକର ଜ୍ୱାଳା ସମ୍ଭାଳି ନପାରି ଯେତେବେଳେ ଭୋକିଲା ଜନତା ଶୃଙ୍ଖଳ ଓଠରୁ ଫୁଟିବାକୁ ଶକ୍ତି ସଞ୍ଚୟ କରି ପାରେନା, ଦାରୁଣ ଅଭାବରେ କବଳିତ ହୋଇ ସର୍ବହରା ଯେତେବେଳେ ଟିକିଏ ତେଲ ଲୁଣରୁ ବଞ୍ଚିତ ସେତେବେଳେ ସଭ୍ୟତାର କାଳସର୍ପ ବିଷରେ ସମାଜ ବିଷଜର୍ଜର ହୋଇ ପଡ଼ନ୍ତି ବୋଲି ବୁଝିବାକୁ ପଡ଼ିବ । 'କ୍ଷମତା ମଦୁଆ ଜନନେତା ମହାବାହୁ' ହାତରେ ଧନେ ମରିଥିଲେ ଆଜିପୁଣି ଭାତରେ ମାରିବା ପାଇଁ ଏକ ନୂତନ କୌଶଳ ଅବଲମ୍ବନ କରିଛନ୍ତି । ପରର ରକ୍ତ ଶୋଷି କରି ଯେଉଁମାନେ ସମାଜର ରକ୍ଷକ ଭାବେ ତଥା-କଥିତ ଗୌରବ ନେଉଛନ୍ତି ସେମାନଙ୍କୁ ମନେ ରଖିବାକୁ ହେବ ଯେ, ଏହି ସମାଜ ବ୍ୟବସ୍ଥା ବେଶି ଦିନ ରହିବ ନାହିଁ । ସେଥିପାଇଁ କୃଷ୍ଣପ୍ରସାଦ ସତର୍କ ବାଣୀ ଶୁଣାଇ ଦେଇଛନ୍ତି ।

"କାଠ ଗୁଣ୍ଡ ଚକ୍ର ପଥର ଜଳଜା ବାଡ଼ିଛୁ ଯୁଗର ଦାବୀ" ଯେଉଁଠି ଶାସନ ନାମରେ ଶୋଷଣ ଚାଲେ, ଆଇନ ନାମରେ ବ୍ୟଭିଚାର, ଦିନରେ ସାଧୁ ବୋଲାଉ ଥିବା ଲୋକ ରାତିରେ ଡାକୁ କଟା ଖୁଣୀ ଓ ଦାଗୀ ସାଜେ; ସେମାନଙ୍କୁ ସର୍ବହରା ଜନତା ଆଉ ବାରମ୍ବାର ସଲାମ ଦେବ ନାହିଁ— ଏହି ଭାବଧାରା କୃଷ୍ଣ ପ୍ରସାଦଙ୍କ ଗୀତି କବିତାରେ ଅତି ମାର୍ମିକ ହୋଇ ପାରିଛି—

"ଗଭୀର ନିବିଡ଼ ବଣବଣା ଆସେ ନଇଁ
ସଭ୍ୟତା ପଦେ କୋଟିଏ ସଲାମ ନେଇ
ସାଧୁ ବୋଲାଇଲେ ଡାକୁ କଟା ଦାଗୀ ଖୁଣୀ
ମଣିଷ ଶବରେ ପୂରିଲା ଯମର ମୂର୍ତ୍ତି"

× × ×

"ଶୋଷଣ କଷଣ କେବେ ଶେଷ ହେବ, ଭଣିଲେ କେଶବ ନବ" ।

ଓଡ଼ିଶାରେ ପ୍ରଗତିଶୀଳ ଆନ୍ଦୋଳନର ଭୂମିକା ନେଇ ଯେଉଁ କବିମାନେ ଉଦାତ୍ତ ସ୍ୱରରେ ବିପ୍ଳବ-ଚେତନା ସୃଷ୍ଟି କରିଥିଲେ, ସେମାନଙ୍କ ପଦାଙ୍କ ଅନୁସରଣ କରି କୃଷ୍ଣପ୍ରସାଦ ମଧ୍ୟ ଅନୁରୂପ ଭାବେ ତାଙ୍କ ସାହିତ୍ୟକୁ ବୁଝିମନ୍ତ କରିଛନ୍ତି ।

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାର ଗ୍ରାମ୍ୟ ଅର୍ଥନୀତିରେ ଯେଉଁ ବିପର୍ଯ୍ୟୟ ଘଟିଲା ସେଥିପ୍ରତି କୃଷ୍ଣ ପ୍ରସାଦ ସଂପୂର୍ଣ୍ଣ ରୂପେ ଅବହିତ ଥିଲେ । ସଂସ୍କାରକର ଭୂମିକା ନେଇ କୃଷ୍ଣ ପ୍ରସାଦଙ୍କ ବିପ୍ଳବ ଧର୍ମୀ ରଚନାଗୁଡ଼ିକ ଅଭିପ୍ରେତ । ଅପେରା ନାଟକରେ ଧ୍ୱନି ମୁକ୍ତାକାଶ ରଙ୍ଗମଞ୍ଚରେ ଉପସ୍ଥିତ ଶହ ଶହ ଦର୍ଶକମାନଙ୍କ ପ୍ରାଣରେ ଏହି ବିପ୍ଳବ ଧର୍ମୀ ରଚନା କିଭଳି ପ୍ରତିକ୍ରିୟା ସୃଷ୍ଟି କରୁଥିବ ତାହା ସହଜରେ ଅନୁମେୟ ।

## ଦେଶ ବନ୍ଦନାରେ କବିପ୍ରାଣ –

କବି କୃଷ୍ଣ ପ୍ରସାଦଙ୍କ ଦେଶ ବନ୍ଦନାରେ ତିନି ପ୍ରକାର ଜାତୀୟତା ଲକ୍ଷ୍ୟ କରିଯାଇ ପାରେ । ତାଙ୍କର ବହୁ କବିତା ବିଶ୍ୱ ଜାତୀୟତାକୁ ଅତି ମର୍ଯ୍ୟାଦା ଦାନ କରି ପାରିଛି । ସେହିଭଳି ଭାରତୀୟ ଜାତୀୟତା ଓ ଉତ୍କଳୀୟ ଜାତୀୟତା ଆଧାରରେ ସେ ବହୁ କବିତା ରଚନା କରିଛନ୍ତି ।

"କହିଲେ ବୁଦ୍ଧ ଯୀଶୁ ଶଂକର କନ୍‌ଫୁସିଅସ କହେ କବୀର
ଗୁରୁ ନାନକ ରାମ୍ସ ରାମାନନ୍ଦ ତୁକାରାମ ମହମ୍ମଦ
ବିଶ୍ୱ ବାସୀ ହିଂସା ଦ୍ୱେଷ ହତ୍ୟାକର ବନ୍ଦ"

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପୃଥିବୀ ଗୁଳି ଗୁଳା, ବିଷ ବାଷ୍ପ ଓ ଯୁଦ୍ଧର ଅଶାନ୍ତ ବାତାବରଣରେ ଅତିଷ୍ଠ ହୋଇ ପଡ଼ିଥିଲା । ଏହି ଯୁଦ୍ଧ-ଅନ୍ଧ ବିଶ୍ୱକୁ ଶାନ୍ତି ଓ ସହାବସ୍ଥାନର ବାଣୀ ଶୁଣାଇବା ନିମିତ୍ତ ପୃଥିବୀର ବହୁ କବି କବିତା ରଚନା କରି ଯାଇଛନ୍ତି । ଉପର୍ଯ୍ୟୁକ୍ତ ପଦରେ କବି ବିଶ୍ୱ ବିଶ୍ରୁତ ଧର୍ମ ପ୍ରଚାରକମାନଙ୍କର ନାମୋଚ୍ଚାରଣ କରି ବିଶ୍ୱବାସୀ ସେମାନଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହେବାପାଇଁ ଉଦ୍‌ବୋଧନ ଦେଇଛନ୍ତି—

'ବିଶ୍ୱବାସୀ ଭାଇ ଭାଇ ନାହିଁ ପରାପର
ପଶୁ ନୋହୁତୁ ମଣିଷ ତୁଆ ମଣିଷ କାମ କର' ।

ପୁଣି ସେହି କବିତାରେ କବି ଉଭୟ ଉତ୍କଳୀୟ ଏବଂ ଭାରତୀୟ ଜାତୀୟତା ଉପରେ ଆଲୋକ ପାତ କରିଛନ୍ତି—ଭବଭୂତି ଭାରବି, କାଳିଦାସ, ମାଘ, ବ୍ୟାସ, ଚାଣକ୍ୟ ଓ ତୁଳସୀ ଦାସଙ୍କ ଭଳି କବି ଅନବଦ୍ୟ କାବ୍ୟ ମାଧ୍ୟମରେ ଆଦର୍ଶର ପ୍ରଚାର କରି ଯାଇଛନ୍ତି । ଏହି ଆଦର୍ଶ ପ୍ରାଚୀନ ଭାରତର ତପୋବନର ନିଷ୍ଠା ବ୍ୟତୀତ ଅନ୍ୟ କିଛି ନୁହେଁ । ସେହି ହୋମ ଧୂମ ଘେରା ପରିବେଶରୁ ଜାତ ଭାରତୀୟ ସଂସ୍କୃତି ବିଶ୍ୱକୁ

କେବଳ ନୂତନ ଦିଗ୍‌ଦର୍ଶନ ଦେଇପାରେ । ସେହି ଭଳି ଅଶୋକ, କନିଷ୍କ, ଖାରବେଳ, ହର୍ଷବର୍ଦ୍ଧନ, କପିଳେନ୍ଦ୍ରଙ୍କ ଭଳି ବୀର 'ଯୋଦ୍ଧାଗଣ ଜାତିର ମର୍ଯ୍ୟାଦା ପାଇଁ ସଂଗ୍ରାମ କରି ଇତିହାସରେ ଅମର ଅଧ୍ୟାୟ ସୃଷ୍ଟି କରି ପାରିଛନ୍ତି । ସେମାନଙ୍କ ବୀରତ୍ୱରେ ଉଦ୍‌ବୁଦ୍ଧ ହେଲେ ଜାତିର ଅନ୍ଧ-ତମସା ନିଶ୍ଚୟ ଦୂର ହୋଇ ପାରିବ । ସଚ୍ଚା ମଣିଷ ପାଇଁ ସତ୍ୟ ପଥ ହିଁ ଏକ ମାତ୍ର ଶ୍ରେୟ । ପ୍ରାଚୀନ ଭାରତର ଲୋପାମୁଦ୍ରା ଖନା, ଦେବଦୂତୀ, ଗାର୍ଗୀ, ମୈତ୍ରେୟୀ ଭଳି ବିଦୁଷୀମାନେ ଏହା ପ୍ରଚ୍ଛର କରି ଯାଇଛନ୍ତି । ଜାତି ଆଜି ସେମାନଙ୍କୁ ଭୁଲିଛି ବୋଲି ଜାତୀୟ ଜୀବନରେ ଘୋର ଦୁର୍ବିପାକ ଆସିଛି ।

"ଗୌତମ ଜୈମିନି ବ୍ୟାସ ପାତଞ୍ଜଳି ପ୍ରାଚୀନ ଭାରତ ଦାର୍ଶନିକ
ଭୃଗୁ ଆର୍ଯ୍ୟଭଟ୍ଟ ବରାହ ମିହିର ରଖିଛନ୍ତି ଆର୍ଯ୍ୟ ଜାତି ଟେକ ।"

ଏମାନେ ହିଁ ଆଜି ଜାତିର ଜୀବନ ବେଦରେ ଜଣେ ଜଣେ କୃତ ବିଦ୍ୟ ଅମର ଭାଷ୍ୟକାର । ଆର୍ଯ୍ୟ ଜାତିର ତେଜ ଓ ଓଜଃ ପ୍ରତିଷ୍ଠା ପାଇଁ ଏମାନଙ୍କ ଉଦ୍ୟମକୁ ଜାତି କେବେ ପାଶୋରି ନ ପାରେ ।

ଭାରତ ଉପରେ ଚୀନର ବର୍ବର ତଥା ନଗ୍ନ ଆକ୍ରମଣ ବେଳେ କୃଷ୍ଣ ପ୍ରସାଦଙ୍କ ଉଦ୍‌ବୋଧନ ମୂଳକ ଗୀତି କବିତାର ଭାବମୂଳ୍ୟ ଅତି ଉଚ୍ଚ କୋଟୀର ।

"ହିନ ଦାବୀ କେହି ଶୁଣିବ କି ପାରିଇ ସ୍ୱାଧୀନତା ପ୍ରିୟଧାର
ନିଜ ପ୍ରାଣଠାରୁ ବଳି ସମ୍ମାନ ଦେଶ ଜାତି ପତାକାର" ।

ସ୍ୱାଧୀନ ଦେଶର ଆଗୁଆ ଜୱାନମାନଙ୍କ ସମର କୌଶଳ ଉପରେ ମତାମତ ଦେଇ କବି ଲେଖିଛନ୍ତି:—

"ସ୍ୱାଧୀନ ଦେଶର ଆଗୁଆ ଜୱାନ କରେ ଟୁର ରାଇଫଲ
ଗୁଳିବାରୁଦର ବାତ୍ୟା ଛୁଟାଏ, କମ୍ପେ ବନାନୀର ଶିର ।
ଘର୍ଘର ନାଦେ ଟ୍ୟାଙ୍କ ଧାଇଁଛି ଟୁକ୍ରିତ ମେସିନ ଗନ
ଶୈଳ ଶିଳାର ବକ୍ଷ କଂପାଇ ଚାଲେ ଭାରତ ଜୱାନ" ।

ହିମାଳୟଠାରୁ କୁମାରୀକା ଯାଏ ରଣ ତାଣ୍ଡବ ଖେଳର ଏକ ଜୀବନ୍ତ ରୂପ ପ୍ରଦାନ କରି କବି ନିଜ ପ୍ରତିଭାର ପରିଚୟ ଦେଇଛନ୍ତି । ଚୀନାମାନଙ୍କର ପ୍ରତାରଣା, ଯୁଦ୍ଧ ଲାଳସା ଏବଂ ପରସ୍ୱ ଅପହରଣ ପ୍ରବୃତ୍ତିକୁ ତାଚ୍ଛଲ୍ୟ କରି କବି କବିତାର ଶେଷରେ ଯେଉଁ ମନ୍ତବ୍ୟ ପ୍ରଦାନ କରିଛନ୍ତି ତାହା ବାସ୍ତବରେ ପ୍ରଣିଧାନ ଯୋଗ୍ୟ—

'ଗ୍ରୁଡ଼ ସୀମାରେଖା ବର୍ବର ଚୀନା, ଯୁଦ୍ଧ ଆଶାକର ଘରେ ନାହିଁ ଦାନା
ଗୋଟିଏ ମକାରେ ମୁଠିଏ ଲଙ୍କାରେ ହେବ କରେ ଦେଶ ଜୟୀ' ।

ପଞ୍ଚଶୀଳକୁ ଲଂଘନ କରି ଚୀନାର ଏହି ବର୍ବର ଆକ୍ରମଣ ବିରୁଦ୍ଧରେ କୃଷ୍ଣପ୍ରସାଦଙ୍କ ବାଙ୍ମୟ ପ୍ରତିବାଦ ଓଡ଼ିଆ ଗୀତି କବିତା ରାଜ୍ୟରେ ଅନନ୍ୟ ସାଧାରଣ ।

କବିଙ୍କ ଦେଶ ବନ୍ଦନା ମୂଳକ 'ମନୀଷା ମଂଗଳ ଜ୍ୟୋତି' ଗୀତି କବିତା ମଧ୍ୟ ଏକ ସଫଳ ସୃଷ୍ଟିର ସ୍ମାରକୀ ବହନ କରିପାରିଛି । ଏହି କବିତାର ଅନ୍ତର୍ନିହିତ ଭାବଧାରା ସହିତ ସଂଯୋଜିତ ଶବ୍ଦ ସମ୍ଭାର କବିତାଟିର ଭାବପକ୍ଷ ଏବଂ କଳା ପକ୍ଷକୁ ସୁନ୍ଦର ରୂପଦାନ କରିବା ସଂଗେ ସଂଗେ ଏହାକୁ ଏକ ନିଚ୍ଛକ ଉଦ୍‌ବୋଧନୀ ସଂଗୀତର ଗୌରବ ପ୍ରଦାନ କରିଛି । ଭାରତ ହେଉଛି ଏଭଳି ଗୋଟିଏ ଦେଶ ଯାହା ମନୀଷା ଶାନ୍ତି ଓ ପ୍ରଗତିକୁ ସ୍ୱାଗତ କରିଛି । କାଳର କାଳିମା ଧୋଇବା ପାଇଁ ଏହି ଦେଶରେ ବୁଦ୍ଧ ଜନ୍ମ ଗ୍ରହଣ କରିଥିଲେ । ବେଦ, ବାଇବେଲ, ଗୀତା, କୋରାନ୍ ପ୍ରଭୃତି ସବୁ ଧର୍ମ ଗ୍ରନ୍ଥ ଏଠାରେ ସମନ୍ୱୟରେ ପୂଜାପାଏ । ତାଳ-ତମାଳ ବିକୀର୍ଣ୍ଣା ଓ ଛବିଳ ତଟିନୀ ଶୋଭିତା ଏହି ଭାରତ ଭୂମି ଅନାଦି କାଳର ସଂସ୍କୃତିରେ ନିଜକୁ ମହାସ୍ନାନ କରିଛି । ବହୁ ଶୀଳ, ଶାନ୍ତ ପ୍ରଜ୍ଞାବନ୍ତ ବ୍ୟକ୍ତି ଏଠାରେ ଜନ୍ମ ଗ୍ରହଣ କରି ଭାରତର ମୁଖ ଉଜ୍ଜ୍ୱଳ କରିଯାଇଛନ୍ତି । ଜାତିର ଚରମ ଦୁର୍ଦ୍ଦିନରେ ମଧ୍ୟ ଏହି ଦେଶ ଶତ୍ରୁମାନଙ୍କୁ ପରାଭୂତ କରିବା ପାଇଁ ଉଗ୍ରରୂପ ଧାରଣ କରିବାକୁ ବାଧ୍ୟ ହୋଇଛି ।

"ଶତ୍ରୁ ଉତ୍ପୀଡ଼ନେ ମାତ ପିଙ୍ଗଳ ଆଗ୍ନେୟ କେଶା
ଧୂସର ଧୂମାଳ ଧ୍ୱାନ୍ତ ଭୀମ ରଣ ଚଣ୍ଡୀ ବେଶା
ବିଶ୍ୱତଟେ ସୃଷ୍ଟି କରି ଅଟ୍ଟହାସ୍ୟ ନାଟ୍ୟଲୀଳା
ଗର୍ଜେ ମହା ସିନ୍ଧୁ ଝଟେ ଶାନ୍ତିର ମହାପ୍ରାଚୀର"

ଆଲୋଚ୍ୟ ପଦରେ କବିଙ୍କର ଶବ୍ଦ-ପ୍ରୟୋଗ କୌଶଳ ସହିତ ଓଜଃ ଗୁଣର ସୂଚନା ମିଳିଥାଏ ।

## ପ୍ରେମ ଗୀତିକାରେ କବି ମାନସ:—

କୃଷ୍ଣପ୍ରସାଦଙ୍କ ପ୍ରେମ ଗୀତିକା ସମୂହରେ ସ୍ୱକୀୟତା ଲକ୍ଷଣୀୟ । ଏହାର ଶୈଳୀ ଯେଉଁଳି ଗିରି ନିର୍ଝର ଭଳି ଚଳ ଚଞ୍ଚଳ, ଅନ୍ତର୍ନିହିତ ଭାବଧାରା ସେହିଭଳି ରସୋଚ୍ଛଳ । ତରୁଣ ଜୀବନରେ ଲିଖିତ ପ୍ରେମ କବିତା ଗୁଡ଼ିକରେ ଏକ ଲଘୁ

ଚନ୍ଦ୍ରାର ପ୍ରତିଫଳନ ଘଟିଥିଲା ବେଳେ କବିଙ୍କ ପରିଣତ ବୟସରେ ରଚିତ କବିତା ଗୁଡ଼ିକ ଅଧିକ ମାର୍ଜିତ ଏବଂ ମନନଶୀଳ । ନାୟକ ଉଦ୍ଦେଶ୍ୟରେ ପ୍ରତୀକ୍ଷମାଣା ନାୟିକାର ମନୋବିଜ୍ଞାନ ଉକ୍ତ କବିତା ଗୁଡ଼ିକୁ ବାସ୍ତବ କରିପାରିଛି ।

"ବେଶ ହୋଇ ନଈ କୂଳ ଚାହିଁଥିବି ତୁମପଥ ଲମ୍ବା ଖୋସାରେ ଖୋସି ଝରା ମାଳତୀ" ଏଥିରେ ରୀତି ଯୁଗର ଶୈଳୀ ପ୍ରତିବିମ୍ବିତ । ରତି ଲାଳସାକୁ ପ୍ରଶମିତ କରିବା ପାଇଁ ପ୍ରେମିକା ପଦୁଅଁ ପାଖୁଡ଼ାରେ ଶେଯ ବିରଚନା କରିଛି । ଶ୍ରୀକ ବିନୋଦିଆର ଅନୁପସ୍ଥିତି ଯୋଗୁଁ ବିରହିଣୀ ନାୟିକା ପାଇଁ 'ମଳୟ ଅନଳ' ଅନଳର ଯନ୍ତ୍ରଣା ଆଣି ଦେଇଛି । ନିଜର ଦଶକୋଟି ଦୋଷକୁ କ୍ଷମା ଦେବାପାଇଁ ପ୍ରେମିକା କେତକୀ ପତ୍ରରେ କେତେବେଳେ ପତ୍ର ଲେଖିଛି ତ ପୁଣି କେତେବେଳେ କେତକୀ କଣ୍ଟା ସାହାଯ୍ୟରେ ପଦ୍ମ ପାଖୁଡ଼ାରେ ପ୍ରଣୟ ଚିଠାଉ ଲେଖିଛି । ମଧୁ-ମାଧବୀ ରାତିରେ ଅଳସ ଜ୍ୟୋତ୍ସ୍ନା ନାୟିକାକୁ ଯେତେବେଳେ ତନ୍ଦ୍ରା ବିଭୋର କରିବା କଥା ସେତେବେଳେ ସେ 'ମଦନ-ମଦୁଆ'ର ଛୁରିକା ଆଘାତ ପାଇଛି । ସେଥିପାଇଁ ନାୟିକାକୁ ମହୁ କଷା ଲାଗିଛି ଓ ନବାତ ଅରୁଚି ଲାଗିଛି ।

"କଷା ଲାଗେ ମହୁ ଆଉ ନ ରୁଚେ ନବାତ ଗୋ"

ଏହି ପାଦଟିର ପ୍ରକାଶ ଭଙ୍ଗୀ କବିତାର ଭାବ ମୂଲ୍ୟକୁ ବହୁ ଗୁଣିତ କରି ପାରିଛି । ଶରତର ଚନ୍ଦ୍ରିକା ସ୍ନାତ ରଜନୀ, ଅପରାଜିତାର ବନ ବାସଭରା ପରିବେଶ ପ୍ରେମିକା ଅନ୍ତରରେ ଶତ କଦମ୍ବର ରୋମାଞ୍ଚ ସୃଷ୍ଟି କରେ । ବିଚ୍ଛେଦ ବିଧୁରା କୁଆଁରୀ ମନ ଏହି ତନ୍ଦ୍ରିଳ ପରିବେଶରେ ଛନ୍ଦ ହରା ହେବା ସ୍ୱାଭାବିକ । ଏହି ଭାବ ଧାରାକୁ କବିତାରେ ରୂପ ଦେଲାବେଳେ କବିଙ୍କ ଶବ୍ଦ ଚୟନ କୌଶଳ ଓ ଆନୁପ୍ରାସିକ ଶୈଳୀ ଯେ କୌଣସି ପାଠକର ଚିତ୍ତ ବୃତ୍ତିରେ ଦ୍ରୁତ-ଗୁଣ ଉଦ୍ରେକ କରିଥାଏ ।

"ଝରି ଝରି ଫୁଲ କାକର ବଉଳ,
ଅପରାଜିତାର ବନବାସ ଭରି,
ଆମ୍ଭ ଜୀବନର ଶୋକ ତାପ ହରି,
ଜହ୍ନ ରାଇଜରୁ ପିଇ ସୁଧା ଧାରି,
ବିରହ ତାତିରେ ଶୋଇଛି ରଜନୀ ବିଚ୍ଛେଦ ବିଧୁରା କୁଆଁରୀ ଗ୍ରୀତ,
ଆସ ଫୁଲ ଶେଯେ ସପନ ସାଥୀ" ।

'ଅନ୍ଧାର ରାତି ଝିଲ୍ଲୀର ଡ଼ାକ ଦୂରୁ ଆସୁଥିଲା ଭାସି' ଏହି ଗୀତ କବିତାରେ କବିଙ୍କ ଉପମା ପ୍ରୟୋଗ ଓ ରୂପକ ଅଭିବ୍ୟକ୍ତିର ପଟାନ୍ତର ନାହିଁ । ଏକଦା ପ୍ରେମ—

ମଧୁ ଗୃଷିଥିବା ପ୍ରେୟସୀ ବରହର ଦାବ-ଦହନ ଭିତରେ ଅଧୋଷ୍ଟ ହେଲବେଳେ ଅତୀତର ସ୍ମୃତି-ଗୃରଣ କରି ମୂର୍ଚ୍ଛ ବିଭୋର ହୋଇ ପଡ଼ିଛି । ସେଇ ବିଜନ ମୂହୂର୍ତ୍ତିର ଚିତ୍ର ଅଙ୍କନ କରିବାକୁ ଯାଇ କବି ଲେଖିଛନ୍ତି—

"ନଗ୍ରର ସଳିତା ଅଧା-ଅଧ ଜଳି ଥିଲ
ଅଧା ଗ୍ରନ୍ଥରେ ଅଧା ନିଦ ଭଙ୍ଗିଗଲ"

ନାୟିକାର ଉତ୍ତପ—ସମ୍ପୂଳୀ ମନ ଯେତେବେଳେ ଭାବୁଛି ଯେ ଅଙ୍ଗତର ଦେହ ନିର୍ଜନ ଗ୍ରନ୍ଥି ତା' ପାଇଁ ଶତ ରୋମାଞ୍ଚରେ ଭଗ୍ନ ସେତେବେଳେ ସେ ନିଶାର୍ଦ୍ଧରେ ମୃଗମଦ କସ୍ତୁରୀ ସାହାଯ୍ୟରେ ନିଜଗଣ୍ଡ ଦେଶରେ ମକରିକାର ଚିତ୍ର ଅଙ୍କନ କରିବାକୁ ଭୁଲି ଯାଇନି । ହୁଏତ ତା ପାଇଁ ଏହି ବିଭ୍ରମ ସ୍ୱଭାବ ତାକୁ ସ୍ୱପ୍ନରେ ହେଲେ ବି ନାୟକର ନିକଟବର୍ତ୍ତୀ କରିଛି । ପୁଣି କୋଟି କୋଟି ଗୁଣ ଦେଇ ସେ ଯେ କେତେ ପ୍ରେମ ପତ୍ର ଲେଖିଛି ତାହା କେବଳ ପ୍ରିୟ ସଖୀକୁ ଜଣା । ବିରହ-ତପତ-ଜ୍ୱର ପାଇଁ ହୁଏତ ଗ୍ରାମର ସବୁ ସରୋଜ ପତ୍ର ନିଃଶେଷ ହେବାକୁ ବସିଲଣି । ସେଥିପାଇଁ ସଖୀ ମୁଖରେ କବି ପ୍ରକାଶ କରିଛନ୍ତି—

'ବଇଦ ଗୁଣିଆ କି କରିବେ ଶ୍ୟାମ ତୁମେ ଏକା ପ୍ରତିକାର ।'

ପ୍ରେମ ଗୀତିକାର ଆଉ କେଉଁଠି ବିରହିଣୀ ନାୟିକା ନଗ୍ରର ସଳିତା ଜାଳି ଓ ଝାଉଁବନ ସ୍ୱରରେ ଗୀତଗାଇ ନାୟକ ପାଇଁ ବ୍ୟଥିତ କରୁଣ ବେଦନା ସୃଷ୍ଟି କରିଛି । ବନାନୀର ଛାଇ ତଳେ ଅନ୍ଧାର ଜମି ଆସିଲ ବେଳେ ଝରା ମାଳତୀର ସୁରଭି ନାୟିକାର ତନୁ ବଲ୍ଲୀରେ ଉଦ୍ଦାମ ପ୍ରେମ ବାସନା ଜାଗ୍ରତ କରିଛି । ନୂତନ କରି ମନ୍ତ୍ରଗତ ବକ୍ଷୋଜରେ ସଞ୍ଚିତ ମଧୁ ସେ ଯାହା ପାଇଁ ସଞ୍ଚୟ କରିଛି ସ୍ୱପ୍ନର ସେଇ ରାଜ କୁମାର ପ୍ରବାଳ ଦ୍ୱୀପରୁ ସତରେ ଫେରିବେ, କି ଆଉ କାହା ପ୍ରେମରେ ନଷ୍ଟ ଉଜାଗର ରହିବେ ସନ୍ଦେହାନ ହୋଇ ନାୟିକା ବିଧୂରା ହୋଇଛି । ଶୈଳ ସୀମାନ୍ତରେ ଜଳୁଥିବା ଦୁଇଟି ତାରାକୁ ଦେଖି ବିରହିଣୀ ଅନ୍ତରରେ ଯେତିକି ଆଶା ସଞ୍ଚିତ ହେଉଛି ପୁଣି ଦୂର ତରୁ ଶାଖାରୁ କ୍ଳାନ୍ତ କପୋତୀର ଯାତନା-ମିଶା କରୁଣ ରାଗିଣୀ ତାକୁ ସେତିକି ବିବ୍ରତ କରିଛି । ବିରହ ଓ ମିଳନର ଛାଇ ଆଲୁଅ ଭିତରେ କୃଷ୍ଣ ପ୍ରସାଦଙ୍କ ଅଧିକାଂଶ କବିତା ଶ୍ରୁତି-ସୁଖକର ହେବା ସଙ୍ଗେ ସଙ୍ଗେ ଏହାର ରସ ପ୍ରସଙ୍ଗକୁ ଅଧିକ ପ୍ରସାରଣଶୀଳ ଓ ନୃତ୍ୟ-ଧର୍ମୀ କରି ପାରିଛି ।

## କବିଙ୍କ ରଚନାରେ ସୁରୁଚି ଓ ସୁନୀତି:—

ସୁରୁଚି ଓ ସୁନୀତିର ପ୍ରତିଷ୍ଠା ଯେ କୌଣସି କବିର ପ୍ରଥମ ଏବଂ ପ୍ରଧାନ କର୍ତ୍ତବ୍ୟ । ସେହି ନ୍ୟାୟରେ କୃଷ୍ଣ ପ୍ରସାଦଙ୍କ ନାଟକଠୁଁ ଆରମ୍ଭ କରି ଗୀତ କବିତା ପର୍ଯ୍ୟନ୍ତ ପ୍ରତ୍ୟେକ ସୃଷ୍ଟିରେ ସଂଯମ, ମର୍ଯ୍ୟାଦା ବୋଧ, ସମ୍ଭବଶୀଳତାର ମୁଦ୍ରାଙ୍କନ ଦେଖିବାକୁ ମିଳେ । ପ୍ରତ୍ୟେକ ଅବିବାହିତା ନାରୀ ପାଇଁ ବିବାହିତ ଜୀବନ ଏକ ଅମଡ଼ା ବାଟ । ସେହି କେବଳ ଅମଡ଼ା ବାଟକୁ ମଡ଼ା ବାଟରେ ପରିଣତ କରିପାରେ, ଯେ ମନର ନିଷ୍ଠା ଓ ଗଭୀର ଆତ୍ମ ବିଶ୍ୱାସ ନେଇ ଜୀବନରେ ଆଗୁସାର ହୋଇଥାଏ । ବାପ ଘରର ମମତାକୁ ପଛରେ ପକାଇ ଶ୍ୱଶୁର ଘରକୁ ଯାଉଥିବା ଝିଅକୁ ଉପଦେଶ ଛଳରେ କବି ପ୍ରକାଶ କରିଛନ୍ତି—

"ବାପଘର ଝିଅ ସୁନାଗୁଣ୍ଡୁଚି ମା ଶ୍ୱଶୁର ଘରକୁ ଲୁହା
ବଡ଼ ଅରମା ସେ ଘର କରଣା ମା ଲହୁଲୁହ କେତେ ଥୁଆ" ।

ଅତି ଗଭୀର ଏବଂ ଗମ୍ଭୀର କଥାକୁ ସାଧାରଣ ଭାଷା ମାଧ୍ୟମରେ କବି ଏଠାରେ ଯେଭଳି ପ୍ରକାଶ କରିଛନ୍ତି ତାହା ଯଥାର୍ଥରେ ପ୍ରଣିଧାନ ଯୋଗ୍ୟ । ପରମନ ଜଗି ଚଳି ନ ପାରିଲେ ଲକ୍ଷେ ଗୁଣ ଥାଇ ମଧ୍ୟ ଅଳ୍ପ ଦୋଷ ପାଇଁ କଳଂକର ହାଟ ବସିଥାଏ । ଜୀବନର ଏହି ଜୁଆ ଖେଳରେ ଥରେ ପରାଜିତ ହେଲେ ନାରୀଜୀବନ କେବଳ ବ୍ୟର୍ଥତାରେ ଗୁମୁରି ଉଠେ ।

## କୃଷ୍ଣପ୍ରସାଦଙ୍କ କବିତାର ଛନ୍ଦ ସୌନ୍ଦର୍ଯ୍ୟ—

କବି ସର୍ବଦା ଛନ୍ଦ-ସଚେତନଶୀଳ ଥିଲେ । ଏହା ଯେ ଗୀତ କବିତାକୁ ଶିଳ୍ପ-ସୌନ୍ଦର୍ଯ୍ୟ ଦାନ କରେ ସେଥିପ୍ରତି କୃଷ୍ଣପ୍ରସାଦ ଅବହିତ ଥିଲେ । ନିର୍ଦ୍ଦିଷ୍ଟ ସଂଖ୍ୟକ ଅକ୍ଷର ପରେ ବିରାମ ବା 'ଯତି' ଦେବା, ଗୋଟିଏ ପାଦର ଆକାର ଗତ ରୂପ ଏହି 'ଯତି' ଦ୍ୱାରା ନିୟନ୍ତ୍ରିତ ହେବା, ସମ ସଂଖ୍ୟକ ଅକ୍ଷର ବିଶିଷ୍ଟ ପାଦରେ ବିଭିନ୍ନ ଯତି ଦ୍ୱାରା ଭିନ୍ନ ଭିନ୍ନ ସଙ୍ଗୀତ କଲ୍ଲୋଳ ସୃଷ୍ଟି କରିବା ପ୍ରତି କୃଷ୍ଣ ପ୍ରସାଦ ଅଧିକ ଦୃଷ୍ଟି ଦେଇଥିବା ମନେହୁଏ । କୃଷ୍ଣ ପ୍ରସାଦ ତାଙ୍କ ରଚନାରେ ଉଭୟ 'ସମବୃତ୍ତ' ଏବଂ 'ବିଷମ ବୃତ୍ତ' ଛନ୍ଦର ବ୍ୟବହାର କରିଛନ୍ତି । ଛନ୍ଦ ପ୍ରୟୋଗ ବେଳେ ଗୀତ କବିତାର ଉଭୟ ଆଙ୍ଗିକ ଏବଂ ଆତ୍ମିକ ସମ୍ପଦ କିଭଳି ନଷ୍ଟ ନ ହେବ ଏଥି-ପାଇଁ ସେ ଯଥାସାଧ୍ୟ ଧ୍ୟାନ ଦେଇ ପାରିଛନ୍ତି । କବି ନିଜେ ଜଣେ ବିଶିଷ୍ଟ ବାଦକ ଏବଂ ସଙ୍ଗୀତ ଶିଳ୍ପୀ ଥିବାରୁ ଏ ଧରଣର ଯତି-ବିଚ୍ୟୁତି ତାଙ୍କ ଗୀତ କବିତାରୁ ଦେଖିବାକୁ ମିଳି ନ ଥାଏ ।

## ଭାଷା ପ୍ରୟୋଗ –

ରସାନୁକୂଳ ଭାଷା ପ୍ରୟୋଗରେ କୃଷ୍ଣ ପ୍ରସାଦ ସିଦ୍ଧହସ୍ତ ଥିଲେ । ଅନୁରୂପ ଭାବେ ତାଙ୍କ ନାଟକରେ ସେ ପାତ୍ର ମୁଖୀ ଭାଷା ପ୍ରୟୋଗ କରି ପାରିଛନ୍ତି । ଦେଶାତ୍ମ - ବୋଧ କିମ୍ବା ଉଦ୍‌ବୋଧନ ମୂଳକ କବିତାରେ ଓଜଃ ଗୁଣସମ୍ପନ୍ନ ଭାଷା, ପ୍ରେମ ଗୀତିକାରେ ମାଧୂର୍ଯ୍ୟ ଗୁଣ, ଭଜନ ଓ ଜଣାଣ ଇତ୍ୟାଦିରେ ସେ ଶାନ୍ତ ରସର ଅବତାରଣା କରି ଅନୁକୂଳ ଭାଷା ପ୍ରୟୋଗ କରିଛନ୍ତି । ଉପମା ଓ ରୂପକ ପ୍ରୟୋଗ କ୍ଷେତ୍ରରେ କବିଙ୍କର ଅସାଧାରଣ ଦକ୍ଷତା ଥିଲା । ବିଶେଷ କରି ପଲ୍ଲୀ କବିତା ରଚନା ବେଳେ ପଲ୍ଲୀର ସର୍ବ ଜନ ବୋଧ୍ୟ ସାଧାରଣ ଭାଷାର ପ୍ରୟୋଗ ସେ କରିପାରିଛନ୍ତି । ମାଇ ସଂଜ, ଟିକି ଗୁପୁଣି ପାଦ, ପେଣ୍ଠୀ ଅବେଡ଼ୀ, ଜାଗୁଳି ମୁର୍ମୁ ଭଳି ଶବ୍ଦ ପ୍ରୟୋଗ କବିଙ୍କ ରଚନାକୁ ଯେ କେବଳ ସରଳ କରିଛି ତା' ନୁହେଁ ଏହା ତାଙ୍କ ରଚନାକୁ ପଲ୍ଲୀ ଜନତାର ନିକଟବର୍ତ୍ତୀ କରିଛି । ଆବଶ୍ୟକ ସ୍ଥଳେ ସେ ତତସମ ଶବ୍ଦର ସାର୍ଥକ ପ୍ରୟୋଗ ମାଧ୍ୟମରେ ନିଜ ପାଣ୍ଡିତ୍ୟ ପ୍ରଦର୍ଶନ କରିଛନ୍ତି । ଗ୍ରାମରେ ପ୍ରଚଳିତ ବହୁ ଢଗ ଢମାଳି ତାଙ୍କ ଗୀତି କବିତା ଓ ଯୁଗ୍ମ ସଙ୍ଗୀତରେ ସ୍ଥାନ ପାଇ ପାରିଛି ।

## ଉପସଂହାର—

କୃଷ୍ଣ ପ୍ରସାଦଙ୍କ ଗୀତି କବିତାକୁ ସମଗ୍ର ଭାବରେ ଦେଖିଲେ ଆମେ ପୀତପଦ ନିଷ୍ପତ୍ତିରେ ଉପନୀତ ହେବା ଯେ ଏହା ଏକ ଜନଗଣର ସାହିତ୍ୟ । କବି ସଂସ୍କୃତ ଭାଷାରେ ବିଦଗ୍ଧ ପଣ୍ଡିତ ନଥିଲେ । ଅବହେଳିତ ଗ୍ରାମର ସ୍ୱପ୍ନ, ଆକାଂକ୍ଷା ଓ ଅନୁଭୂତି ନିଜର ଗୃହ କଥିତ ଭାଷାରେ ପ୍ରକାଶ ପାଇବ, ସମ୍ଭବତଃ ଏହାହିଁ ଥିଲା ତାଙ୍କ ସାହିତ୍ୟର ଅନ୍ତର୍ବାଣୀ । ଆଧୁନିକ ଶିକ୍ଷାର ପ୍ରସାର ଫଳରେ ଆମ ଦେଶରେ ଗଢ଼ି ଉଠଥିବା ଶିକ୍ଷାଭିମାନୀ ବ୍ୟକ୍ତିଗଣ ମୁକ୍ତାକାଶ ରଙ୍ଗମଞ୍ଚରେ ଅଭିନୀତ ଅପେରା ଶିଳ୍ପକୁ କାହିଁକି କେଜାଣି ତାଚ୍ଛଲ୍ୟ ପ୍ରକାଶ କରୁଥିଲେ । ଏ ଧରଣର କଳାକୁ କେବଳ ସେହିମାନେ ଉପଭୋଗ କରୁଥିଲେ, ଯେଉଁମାନେ ଅର୍ଥବ୍ୟୟ କରି ଥିଏଟର କିମ୍ବା ସିନେମା ଦେଖାରୁ ବଞ୍ଚିତ ଥିଲେ କିମ୍ବା ଅର୍ଦ୍ଧ ଶିକ୍ଷିତ ବ୍ୟକ୍ତିମାନେ ରାତି ରାତି ଉଜାଗର ରହି ଶୀତ କାକରକୁ ଖାତିର ନକରି ଯେଉଁ ଶିଳ୍ପ ଦର୍ଶନରେ ମୁଗ୍ଧ ବିଭୋର ହୋଇ ପଡୁଥିଲେ ସେହି ଶିଳ୍ପଥିଲା ଯାତ୍ରା ଶିଳ୍ପ ଏବଂ ଏହି ଶିଳ୍ପର ଆଙ୍ଗିକ ଏବଂ ଆତ୍ମିକ ସ୍ତର ପରିବର୍ତ୍ତନ ପାଇଁ କୃଷ୍ଣ ପ୍ରସାଦଙ୍କ ଭଳି ଜୀବନନିଷ୍ଠ ଶିଳ୍ପୀମାନେ ବହୁଭାବେ ଉଦ୍ୟମ କରି ଆସିଛନ୍ତି । ଅନ୍ୟ ଯେଉଁ କୃତି ସନ୍ତାନ ଗଣ ଅପେରା କଳାରେ ପୁନର୍ବିନ୍ୟାସ ପାଇଁ ଧୂପ ଭଳି ଜଳି ଯାଇଛନ୍ତି ସେମାନେ ହେଉଛନ୍ତି

ଶ୍ରୀ ଦେବନାଥ ପଣ୍ଡା, ଶ୍ରୀ ଶ୍ୟାମ ସୁନ୍ଦର ମହାପାତ୍ର ଓ ଶ୍ରୀ ଯଦୁମଣି କାନୁନଗୋ । ଏମାନଙ୍କ ଲେଖନୀ ଏବେ ମଧ୍ୟ ଚଳଚଞ୍ଚଳ । ସମସ୍ତ ଆଶିବ, ଏମାନେ ଇତିହାସର ବରମାଲ୍ୟ ଗ୍ରହଣ କରିବେ । ଇତିହାସ ଏମାନଙ୍କୁ ଫାଙ୍କି ଦେଇ ଓଡ଼ିଆ ସାହିତ୍ୟର ସୁଦୃଢ଼ ପରଂପରା ପ୍ରତିଷ୍ଠା କରି ପାରିବ ନାହିଁ । କାରଣ ଏମାନେ ଜନଗଣର ଲେଖକ । ସେହିଭଳି କୃଷ୍ଣ ପ୍ରସାଦଙ୍କ ରଚନା ମୁଖ୍ୟତଃ ଜନତା ପାଇଁ ଏବଂ ଜନତା ଦ୍ୱାରା ପରିପୁଷ୍ଟ । ଏଧରଣର କଳା ଆଜି ସଗର୍ବରେ ଦଣ୍ଡାୟମାନ କାରଣ ଏହାର ମୂଳପଟରେ ଜନତାର ଆଶୀର୍ବାଦ ରହିଛି । କୌଣସି ଶାସକ ଏହାପାଇଁ ଉତ୍ସାହ ପ୍ରଦାନ କରି ନାହିଁ । ଅନ୍ୟ କୌଣସି ଭାରତୀୟ ଭାଷାକୁ ଏହି କଳାର ପ୍ରତିଷ୍ଠା ପାଇଁ ଏତେ କଠିନ ସଂଗ୍ରାମ କରିବାକୁ ପଡ଼ି ନାହିଁ । ଯେତେ ବେଶୀ କରିବାକୁ ପଡ଼ିଛି ଏ ଦେଶରେ ଜୀବନ ସଂଗ୍ରାମରେ କ୍ଷତ ବିକ୍ଷତ ହୋଇ ଓ ଅନ୍ନ ସଂସ୍ଥାନର ଅନୁକୂଳ ପରିସ୍ଥିତି ଓଡ଼ିଶାରେ ନପାଇ କୃଷ୍ଣ ପ୍ରସାଦ କଲିକତାର ପ୍ରବାସୀ ଓଡ଼ିଆଙ୍କ ନିକଟକୁ ଧାଇଁ ଯାଇ ସେଠାରୁ ଅକୁଣ୍ଠ ସାହାଯ୍ୟ ସହାନୁଭୂତି ଲାଭ କରିପାରିଛନ୍ତି ।

ପରିବର୍ତ୍ତିତ ସମୟର ପ୍ରାଣ ସ୍ପନ୍ଦନରେ ଯାତ୍ରା ଶିଳ୍ପ କଳାକ୍ଷେତ୍ରରେ ଉଚ୍ଚମାନ ପ୍ରତିଷ୍ଠା ପାଇଁ ଅଜି ଯଥେଷ୍ଟ ଯୋଗ୍ୟତା ଅର୍ଜନ କରିପାରିଛି । ଏଥିପାଇଁ ଯେଉଁ ସ୍ରଷ୍ଟା ଓ କଳାକାରମାନେ ନେପଥ୍ୟ ପାଖୁଡ଼ା ଝାଡ଼ି ଝରିଗଲେ, ଜାତି ସେମାନଙ୍କୁ ଦେଇଛି କ'ଣ ? କେହି ବୁଝିବାକୁ ଯଦି ଚେଷ୍ଟା କରନ୍ତି ଅଶିକ୍ଷିତ କେନ୍ଦ୍ରାବାଦକ, ନାଥଯୋଗୀ, ଗୋଟିପୁଅ ନାଚ ଦଳ, ଯାତ୍ରା ବାଲା, ଦାସକାଠିଆ ଓ ଚଢ଼ିଆ ନାଟ କଭଳି ଓ କେଉଁ ମୂଲ୍ୟ ନେଇ ଏ ଦେଶରେ ବଞ୍ଚି ରହିଲେ । କୃଷ୍ଣ ପ୍ରସାଦଙ୍କ ଭଳି ଦରିଦ୍ର କାବ୍ୟ ପୁରୁଷ ଅଭାବ, ଅନଟନ ଓ ଦୈନ୍ୟର ପାଷାଣ ଚାପ ତଳେ ଆର୍ତ୍ତ ଚିତ୍କାର କରିଛି । 'ବେହେରା ମାଷ୍ଟ୍ର'ଙ୍କୁ ଯଦି କେହି ଦାନା ଦେଇଥାଏ ତେବେ ସେ ହେଉଛି କବିଙ୍କ ଚୀର କବିତା ବର୍ଣ୍ଣିତ ଗୋବର ଗୋଡ଼ୀ ଭଜନା ମା, ସାନ୍ତୁଘର ଶୁକୁରି, ଗରଡ଼ିଆ ହାଡ଼ିଆ ଓଝା ଓ ଆହୁରି ଅନେକ ନାମହୀନ ଅଶିକ୍ଷିତ ଗ୍ରାମୀଣ କୁଲି ମଜୁରିଆ । ହୁଏତ ସେଇମାନଙ୍କ ମାନସିକ ପ୍ରଶାନ୍ତି ଓ ଚିତ୍ତବିନୋଦନ ପାଇଁ କବି କୃଷ୍ଣ ପ୍ରସାଦଙ୍କ ରଚନା ଭିତରକୁ ମନ୍ଦୁରାଳି ମାଛ, କୁଟା ଚେନ୍ନୁଲି, ନୂଆଗୁଡ଼, ଷଟେଟକୁଳି, ଚିତଉପିଠା, ବରକୋଳି, କରମଂଗା କଷି, କଳମ ଶାଗ ଓ ବାଲୀପଟାଳି ଆସିଛି । ନିରକ୍ଷର ଓଡ଼ିଆ ଜନର ସଂସ୍କୃତି ଓ ଶ୍ୱତନୀତ ସହିତ ସଂପୂର୍ଣ୍ଣ ରୂପେ ଅଚେତନ ଥିଲ । ସେହି କାରଣରୁ ଓଡ଼ିଶାର ଗାଁ ଦାଣ୍ଡ, ଗାଁ ଧାନ ବିଲ, ପୋଖରୀ ତୁଠ ଓ ଗାଁ ଚୋଟାର ଏକ ସାଧାରଣ ଦୃଶ୍ୟ କବି ଲେଖନୀରେ ସ୍ଥାନ ପାଇବାକୁ ବାଧ୍ୟ ହୋଇଛି ।

କୃଷ୍ଣ ପ୍ରସାଦଙ୍କ ରଚନାକୁ କେନ୍ଦ୍ର କରି ସାଧାରଣରେ ବହୁ ସପକ୍ଷ ଏବଂ ବିପକ୍ଷ ଯୁକ୍ତି ଶୁଣିବାକୁ ମିଳିଥାଏ । ନାଟ୍ୟ ରଚନା କ୍ଷେତ୍ରରେ ଅନୁବାଦ ଏବଂ ଆହରଣଶୀଳତା ଉପରେ ସେ ବିହୁ ସ୍ଥଳରେ ନିର୍ଭର କରିଛନ୍ତି ଏ କଥା ସତ୍ୟ ମାତ୍ର ଗୀତି କବିତା ଏବଂ ସଂଯୋଜନା କ୍ଷେତ୍ରରେ ତାଙ୍କର ଯେ ଏକ ନିଜର ଶୈଳୀ ଥିଲା ତାହା ଅସ୍ୱୀକାର କଲେ ସମାଲୋଚନା ଏକ ଦେଶଦର୍ଶୀ ହେବା ବିଚିତ୍ର ନୁହେଁ । ପୃଥିବୀରେ ଏଭଳି କୌଣସି କବି ମିଳିବେ ନାହିଁ ଯିଏ ଅନ୍ୟଦ୍ୱାରା ପ୍ରଭାବିତ ହୋଇ ନାହାଁନ୍ତି । ବହୁ ପୁସ୍ତକ ପାଠ କରି ସାରିଲା ପରେ ବି ସୃଜନଶୀଳ ସତ୍ତା ସବୁ ଦେଶରେ ଦୁର୍ଲଭ । ଏଠାରେ ଏତିମାତ୍ର କାରଣ କେବଳ ବହୁଶାସ୍ତ୍ର ପଠନ ସତ୍ତ୍ୱାର ଏକ ଗୁଣ ହୋଇ ପାରେ ମାତ୍ର ଦେଶୀ ସଂସ୍କାର ସତ୍ତାଠାରୁ ବଡଗୁଣ । କୃଷ୍ଣ ପ୍ରସାଦ ଏହି ନ୍ୟାୟରେ ଜଣେ ତଥା ପ୍ରତିଭାବାନ ଶିଳ୍ପୀ ଥିଲେ । ତାଙ୍କ ନିକଟରେ 'ନବ ନବୋନ୍ମେଷଶାଳିନୀ ପ୍ରଜ୍ଞା' ଥିଲା । ବେଶି ସେ ଯାହାକୁ ଛୁଇଁଛନ୍ତି ତାକୁ ସୁନା କରିଛନ୍ତି । ତାଙ୍କର ସମଗ୍ର ସୃଷ୍ଟିକୁ ଗଭୀର ଭାବେ ଅନୁଧ୍ୟାନ ନ କରି ଯେଉଁମାନେ ତାଙ୍କ ଉଦ୍ଦେଶ୍ୟରେ ପ୍ରତିକୂଳ ସମାଲୋଚନା ବାଣ ନିକ୍ଷେପ କରିଥାଆନ୍ତି ସେମାନେ କେବଳ ନିଜର ଦାୟିତ୍ୱହୀନତାକୁ ପରୋକ୍ଷରେ ପ୍ରମାଣିତ କରିଥାଆନ୍ତି ।

ଅବସ୍ଥା ଚକ୍ରରେ କବିଙ୍କୁ ଅସମୟରେ ଗୋଟିଏ ଅପେରା ଗ୍ରୁପ୍ ଆନ୍ୟଣ ଦେବାକୁ ପଡ଼ିଛି । ସେଥିପାଇଁ ତାଙ୍କୁ ଜୀବନକାଳ ମଧ୍ୟରେ ତିକ୍ତ ସମାଲୋଚନାର ଶରବ୍ୟ ହେବାକୁ ପଡ଼ିଛି । ତାଙ୍କ ଯିବା ପରେ ପରେ କ୍ରମଶଃ ଅପେରା ଭାଙ୍ଗି ଯାଇଛି ମାତ୍ର ସେ ଯେଉଁଠିକୁ ଯାଇଛନ୍ତି ସେଠି ସୁନା ଗଢ଼ି ଉଠିଛି କଳାର ଏକ ନୂଆ କୋଣାର୍କଟିଏ । କୃଷ୍ଣ ପ୍ରସାଦ ଏହି ଧୂଳି ଧରାରେ ଜଣେ ସାଧାରଣ ମଣିଷ । ସେ ଦେବତା ନଥିଲେ । ତାଙ୍କର ଦୋଷ ତ୍ରୁଟି ରହିବା ସ୍ୱାଭାବିକ, ଯାହା ରହିଛି ପ୍ରାୟ ପ୍ରତ୍ୟେକ ପ୍ରତିଭାଧର ଶିଳ୍ପୀଙ୍କ ନିକଟରେ । ଭାଙ୍ଗିବା ଲୋକ ଗଢ଼ି ନ ପାରିଲେ ପୁଣ୍ୟ ହୁଏ, ମାତ୍ର ଗଢ଼ିବା ଲୋକ ଜୀବଧର୍ମର ବଶବର୍ତ୍ତୀ ହୋଇ ଯଦି ଅବସ୍ଥା ଚକ୍ରରେ କିଛି ଭାଙ୍ଗିବାକୁ ବାଧ୍ୟ ହୁଏ ତେବେ ତୁଙ୍ଗ କଥିତ ବ୍ୟକ୍ତି ସହିତ ତାଙ୍କୁ ତୁଳନା କରିବା ଯୁକ୍ତି ସଂଗତ ହେବ ନାହିଁ । ସ୍ରଷ୍ଟାର ବ୍ୟକ୍ତିଗତ ଆଚରଣ ସହିତ କଳାର ସଂପର୍କ ଥାଇପାରେ ମାତ୍ର ଏହି କଳା ଯଦି କଳାକାରର ଦୋଷ ନ ନିଏ ତେବେ ସେହି କଳା ପୂଜାରୀ ଆମ ସମସ୍ତଙ୍କର ପ୍ରିୟ । ସେ ଦୃଷ୍ଟିରୁ କବି କୃଷ୍ଣ ପ୍ରସାଦ ସାଧାରଣ ସମାଲୋଚନାର ବହୁ ଊର୍ଦ୍ଧ୍ୱରେ ରହିବେ । ଆମ ସମାଜରେ କୁତ୍ସା ପ୍ରଚାର କରିବା ଯେତେ ସହଜ, ଖଣ୍ଡେ ସମ୍ମାନ ଜନକ ପୁସ୍ତକ ରଚନା ସେତେ ସହଜ ନୁହେଁ ବୋଲି ତାଙ୍କର ତଥାକଥିତ ସମାଲୋଚକମାନେ ହୃଦୟଙ୍ଗମ କରି ପାରିଥିବେ ।

ମନ୍ଦ କଥା ଲୁଚାଇ ରଖି ହୁଏନା କିମ୍ବା ସବୁ ସମୟରେ ସବୁକଥା ମଧ୍ୟ ପ୍ରକାଶ କରାଯାଇ ପାରେନା । ପ୍ରକାଶ ପାଇଲେ ଅପ୍ରିୟ ହେବାକୁ ପଡ଼େ, ପ୍ରକାଶ ନପାଇଲେ ଅନ୍ତର୍ବେଦନା ଭିତରେ ସନ୍ତପ୍ତ ହେବାହିଁ ସାର ହୁଏ । କୃଷ୍ଣପ୍ରସାଦଙ୍କ ଗୀତି କବିତା ସଂପର୍କରେ ମତ ଦେଇ ଆସି ନପାରିଲି ଏଥିପାଇଁ କୃଷ୍ଣ ପ୍ରସାଦଙ୍କ ଛନ୍ଦର ଦାୟୀ ନୁହେଁ, ଦାୟୀ ଅଜ୍ଞ ବ୍ୟକ୍ତିର ଅଜ୍ଞତା । ଏଦେଶର ପ୍ରତିଷ୍ଠିତ କବିମାନଙ୍କ ଉପରେ ରାଶି ରାଶି ଆଲୋଚନା ପୁସ୍ତକ ଲେଖା ହେଲାଣି । ମାତ୍ର ଯେଉଁମାନେ ପ୍ରତିଭା ଧରି ଅଥଚ ଅବହେଳିତ କିମ୍ବା ଅବସ୍ଥା ଚକ୍ରରେ ଅଜ୍ଞାତ, ସେମାନଙ୍କୁ ଲୋକଲୋଚନକୁ ଆଣିବା ବୁଦ୍ଧିଜୀବୀଙ୍କର ପ୍ରଥମ ଏବଂ ପ୍ରଧାନ କର୍ତ୍ତବ୍ୟ । କେତେ ସାଧାରଣ ମାନର ଶିଳ୍ପୀ ଉପରେ ଆଲୋଚନା ପୁସ୍ତକ ପ୍ରଣୟନ ଦୋଷାବହ ନୁହେଁ, ଯଦି ଏହି ଶିଳ୍ପୀ ମଧ୍ୟମସ୍ତ ସୃଷ୍ଟିର ପରିବାହକ ହୋଇଥାଆନ୍ତି ।

ବିଶ୍ୱ-ବିଶ୍ରୁତ ନାଟ୍ୟକାର ସେକ୍ସପିଅରଙ୍କ ଇତିବୃତ୍ତ ତେବେ କ'ଣ ? ମାର୍ଲୋ ତାଙ୍କୁ କାହିଁକି ମାଟ୍ରିକ୍ କବି ବୋଲି କୁହାଗଲା ? ଅନ୍ଧ କବି ଭୀମଭୋଇ କିମ୍ବା ଭାଗବତକାର ଜଗନ୍ନାଥ ଦାସଙ୍କ ବଂଶ ପରଂପରା କିମ୍ବା ଶିକ୍ଷାଗତ ଯୋଗ୍ୟତା କେଉଁ ମାପକାଠିରେ ମପା ଯାଇ ପାରିବ ?

କୌଣସି ଭେଦ ବୁଦ୍ଧିରେ ସୃଜନଶୀଳ ସ୍ରଷ୍ଟାର ମୂଲ୍ୟାୟନ କରାଯାଇ ନପାରେ । ଗୋଟିଏ ଯେ ଡ଼ିଏ ଗୀତି କବିତା ଶ୍ରବଣ କରି ସମଗ୍ରତାର ସ୍ୱର ନିରୂପଣ କରିବା ଯେ କେତେ ପ୍ରମାଦ ପୂର୍ଣ୍ଣ ତାହା ଅତୀତରେ ପ୍ରମାଣିତ ହୋଇଛି । ଶିଳ୍ପୀ ବେହେରା ପ୍ରାୟ ୪୦ ବର୍ଷ କବିତା ରଚନାରେ ଅତିବାହିତ କରିଛନ୍ତି । ସେ ଯେ ନିଶ୍ଚିତ ରୂପେ କେତେ ହଜାର ଗୀତି କବିତା ରଚନା କରିଥିବେ ତାହା ଦିବା ଲୋକଭଳି ସ୍ପଷ୍ଟ । ଏହି କବିତା ଗୁଡ଼ିକୁ ସଂଗ୍ରହ କରି ତାଙ୍କ ରଚନାର ମାନ ନିର୍ଣ୍ଣୟ ପାଇଁ ଆଗଭର ହେଲେ ଆମେ ଏକ ଜାତୀୟ କର୍ତ୍ତବ୍ୟ ସଂପାଦନ କଲୁ ବୋଲି ଗର୍ବ କରିପାରୁ, ଅନ୍ୟଥା ଲୋକେ ଆମର ଅବିମୃଶ୍ୟକାରିତାକୁ କେବଳ ଉପହାସ କରିବେ ।

ଧୂପ ଜଳିଯାଏ, କିନ୍ତୁ ସୁଗନ୍ଧରେ ସେ ଅନ୍ୟକୁ ଆକର୍ଷଣ କରେ । କୃଷ୍ଣପ୍ରସାଦ [illegible] କୁହୁଳି ଗୋଟିଏ ଜୀବନକୁ ଜାଳି ଦେଇଛନ୍ତି, ହେଲେ ସେହି ଜଳା-ଜୀବନର ସୁରଭି-ସ୍ପର୍ଶ ଆମେ ଗୀତି କବିତା ଭିତରୁ ହିଁ ପାଇଥାଉଁ ।

କବି କୃଷ୍ଣପ୍ରସାଦଙ୍କ ଗୀତି କବିତା ହିଁ ନିଶୀଥର ଏକ ବଂଶୀ ଧ୍ୱନି, ଦୂର ତରୁ ଶାଖାରୁ ଖସି ଆସୁଥିବା ସାଥୀହରା ପକ୍ଷୀର ଏକ ସଜଳ ଆର୍ତ୍ତନାଦ, ଅପରାଜିତାଙ୍କ ବନବାସଭରା ସ୍ନିଗ୍ଧ ସୁରଭି, ନିଗମ ସଂସାର ପଥର କ୍ଲାନ୍ତ ପଥିକ କଣ୍ଠରୁ ଝରି ଆସୁଥିବା ବୈରାଗ୍ୟ ସ୍ୱର, ଆଦ୍ୟ ଆଷାଢର ପ୍ରଥମ ବାରି ଧାରାର ସିକ୍ତ-ରୋମାଞ୍ଚ ଅଳସ ଅପରାହ୍ଣର ବର୍ଣ୍ଣ ବିଭା, ସ୍ୱପ୍ନାଞ୍ଜନ ବୋଳା କାବ୍ୟ କାଉଁରୀର ଏକ ଶୀତ ଚନ୍ଦନ ଓ ଅନାଗତ ଭବିଷ୍ୟତର ନୂଆ ଜୀବନ ପାଇଁ ଏକ ସ୍ପନ୍ଦିତ କାବ୍ୟାଞ୍ଜଳି ।

———

# ଉଦ୍‌ବୋଧନୀ

॥ ୧ ॥

ଅଗ୍ରସର ବ୍ୟଗ୍ରତର ତୂ'ରେ
ରୁଦ୍ର ବୀଣା ମନ୍ଦ୍ରେ ବାଜେ ଦୂରେ
ମୁଗ୍ଧ ବିଶ୍ୱ କ୍ଷୁବ୍ଧ ତା'ର ସୁରେ ।୦।

ଅନ୍ଧକାର ବନ୍ଧ ଭାଙ୍ଗିଯାଏ
ଜ୍ୟୋତି ଶୁଭ୍ର ତୀବ୍ର ଗତି ଧାଏଁ ।
ଅନ୍ତରୀକ୍ଷ ଗୁପ୍ତ ଅନ୍ତପୁରେ
ରୁଦ୍ର ବୀଣା ମନ୍ଦ୍ରେ ବାଜେ ଦୂରେ ।୧।

ପ୍ରଦୀପର ଦୀପ୍ତ ଜ୍ୟୋତି ଗ୍ରହିଁ ।
ଲକ୍ଷ୍ୟ ରଖି ମୁଖ୍ୟ ପଥେ ଯାଆ
ପ୍ରସ୍ତରର ରୁକ୍ଷ ବକ୍ଷେ ମୁକ୍ତ—
ଝଂଜା ଝଡ ବାତ୍ୟା ଊର୍ଦ୍ଧ୍ୱେ ଘୁରେ ।୨।

ପ୍ରତିରୋଧ ପ୍ରତିଶୋଧ ପାଇଁ
ଲୁପ୍ତ ସିଂହ ସୁପ୍ତ ହୁଅ ନାହିଁ
ଉତ୍ତିଷ୍ଠତ ଜାଗ୍ରତର ମନ୍ତ୍ରେ
ଉଦୀଚୀର ଦିଗପ୍ରାନ୍ତ ଭରେ
ରୁଦ୍ର ବୀଣା ମନ୍ଦ୍ରେ ବାଜେ ଦୂରେ ।୩।

—

॥ ୨ ॥

ଆଜି ତାଜା କଞ୍ଚା ଲହୁ ଝକ ମକ
ହସ ହସ ମୁଖ ତରୁଣ ଗୃହାଁ
ତୋ' ଭୋକ ପାଇଁକ ତାଳବେର ଖଣି
'କୋଇଲା କୁଡ଼ରେ ଫୁଟୁଛୁ ଗୁ' ।୦।

ଓଠର କାନ୍ଥିରେ ଜିଭ ଘଷି ଘଷି
ନଗ୍ନ କବଟାରେ ଝାଳ ପୋଛୁ ପୋଛୁ
ଚଲିଛନ୍ତି କୁଲି କରଣୀ ଅଭାଗା
ଲୁହାର ଚେମିଣି ଗ୍ରୁଡୁଛୁ ଧୂଆଁ
ଅଣ ଓଡ଼ିଆର ଲହୁ ହାଟ ପାଖେ
ପୁଞ୍ଜି ପଥ ବାଧ କରୁଛୁ ଆଁ ।୧।

ରୋଗା ହାଡ଼କଣି ନୁଆଁଣିଆଁ ଗୁଲେ
ଜଳେ ଦପ ଦପ ପୋକ ଢେଉଁ ବୁଲେ
ଦଦରା ଶକସା ଟାଣୁଛି ଅଫିମା
ଦେହସାରା ଘେର ଯାଉଛୁ ଘାଆ
ଗିବୁନକ ମୋର ଯୁଆନ ଗଣଲ
ଯୁଗ ରଣ ଲଗି ଡାକୁଛୁ ମା' ।୨।

ଲଙ୍ଗଳ ଗେଳକଛୁ, ପୁଞ୍ଜିର ପଥର
ମଉସୁମୀ ମେଘେ ଜମିଛୁ ଅନ୍ଧାର
ଗରୀବ ଯୁବତୀ ଧନୀ କୋଠା ପାଖେ
ଦେଖି ରୋଗା କୁଡ଼ୀ ଧରୁଛୁ ରାଆ
ସଢ଼ା ଚମ ତା'ର ଝୁଣ୍ଟୁଛୁ କନଆଁ
ମୋ ନବ ଯୁଆନ ଦେଖିବୁ ଆ ।୩।

ନେହ୍ରୁଙ୍କ ମନ୍ତ୍ରିର ଉଦ୍ବର ଅଟ।
ବାଲ୍ ମିଶା ଡାଲ୍ ଚମଡ଼ା ପରଟା
ବଣ ଫଳ ତେଲ ପବନ ଡାଲ୍ଡ଼ା.
ଶୋଷକର ଜାନଗ୍ର ହୋଇଛୁ ଥିଆ
ପ୍ରାଚୀନ ଏସିଆ ସଭ୍ୟ ଦୁନିଆଁ
ପୁଞ୍ଜିପତି ରଙ୍ଗ ଦେଖିବୁ ଆ ।୯।

ଗଳି ଅନ୍ଧାରରେ ଖୁଣୀ ରହେ ଛପି
କଳା ଆଇନର ସିନ୍ଧ୍ କାଠି ମାପି
ଦରିଆ କୂଳରେ ବୋମା ବାରୁଦର
ଲୁହାର ନଗର କରିଛୁ ଆଁ
ଚୁଲାର ମହଲ ଜାଳିବା ପାଇଁକି
ମୋ ଦେଶ ନବୀନ ଯୁଆନ ଯା' ।୧୦।

----

ଜେତେ ଦେଶ ପ୍ରେମିକ ପ୍ରୟୋଜନ ସମୟରେ ଦେଶ ଦେଶ ଚିତ୍କାର କରନ୍ତି । ଶାସନ ଭାର ହାତକୁ ଗଲେ ସେହିମାନେ ହୁଅନ୍ତି ଅତ୍ୟ ଲୁଚ୍ଚା, ସ୍ୱାର୍ଥ ପ୍ରେର—

—ରାଜଦ୍ରୋହୀ—

## ।। ୩ ।।

ଆମେ ଗଢ଼ିବା ନୂଆ ଭାରତରେ ! ଆସ !
ପର ଓଳି ତଳେ ଦଳା ଦଳି ହୋଇ ନ ପାରିବା ଆଉ ହାତରେ ।୦।

ପଞ୍ଚଶୀଳ ଦେଶେ ପାଞ୍ଚ ବରଷକୁ ହୋଇଛୁ ନୂଆ ଯୋଜନାରେ
ଗଲା ଦିନ କଥା ପାସୋରି ପକାଇ ପୁରୁଷକୁ ଏବେ ଅନା
ନିଜେ ନ ଚାହିଁଲେ ଝୁଲା ବୁଢ଼ା ଧନ ହୋଇଯିବ ପର ହାତରେ ।୧।

କୃଷୀଭାଇ ମୋର ନୂଆ ଖତ ମାନ ମାଟି ମାଆକୁ ତୁ ଅନାରେ
ସେହି ଗୋଟେ ଦାନା କନା ଯାଚ ଦେବ ପେଟରେ ରଖିଛୁ ସୁନା
ବେଳକାଳ ଜାଣି ହେଲେ ସାର ପାଣି ଖୋଲିବ ତୋର ବରାତରେ ।୨।

ମଜୁରିଆ ଭାଇ ଗତର ଖଟାଇ ଗଢ଼ିନେ ନୂଆ ସଡ଼କରେ
ସହସ୍ର ସଭ୍ୟତା କୁହୁକେ ନ ଭୁଲି ରଖ ମଙ୍ଗଳ ଟେକ,
ଚକ ଚକ ହେବ ଧୂଳି ମଳି ଗାଁ କଳେ, ଦିହ ମିହନତରେ ।୩।

ପାଠୁଆ ଭାଇରେ ଶାଠୁଆ ପଣକୁ ଭାଙ୍ଗ ଲଗା ବୁଦ୍ଧି ବଳରେ
ବଡ଼ ହେବୁ ଯଦି ଜଡ଼ ନ ହୋଇତୁ ବସା କାରଖାନା କଳ
ପୁଅ ନାତି ଲାଗି ନ ରହିଲେ ଜାଗି ପଛେ ହେବୁ ହନ୍ତସନ୍ତରେ ।୪।

ଶହେକୁ ସତୁରୀ ମୂରୁଖ ଏଦେଶେ ଆଖି ଥାଉ ଥାଉ ଅନ୍ଧରେ
କହ କଏ ତାକୁ ବୁଝି ବତାଇବ ବୁଝାଇବ ଭଲ ମନ୍ଦ
ଅକଳ ନସାଧି ଅସଲ ବେଳେଣୁ ନିଜେ ବୁଝି ନିଜ ହିତରେ ।୫।

ପରନିନ୍ଦା ପାଇଁ ପର ଦୋଷ ଦେଇ ଦିନପରେ ଯାଏ ଦିନରେ
ଶହ ଶହ ନଈ ଲକ୍ଷ ଲକ୍ଷ ଖଣି ଥାଇ ତୁ କାହିଁକି ହୀନ,
ଟାହୁଲି ଟାପରା ପରକୁ ନକରି ଧରମରେ ରଖ ଚଉରେ, ।୬।

---

॥ ୪ ॥

ଇତିହାସ କୁହ କଥା, ଇତିହାସ କୁହ କଥା,
ଜ୍ଞାନ ବିଜ୍ଞାନର ନେହ ସ୍ମରଣ କବ
କାହିଁକି ଏ ନୀରବତା ।୦।

ଯୁଗ ଯୁଗାନ୍ତ ଅନନ୍ତ ଅତୀତ
ବିଗତ କୋଳରୁ ହୁଅ ଉପଗତ
ଭୂମା ଭୂତି ଭୂତ ବିଭୂତି ଦେଖାଇ
ଦୂରକର ଅସାରତା ।୧।

ବର୍ଣ୍ଣନା ଛଳରେ କର ସୁଚାରଣ
ସ୍ୱଚ୍ଛ ଅନାବିଳ ଚରିତ୍ର ମହାନ,
ବିକଶିତ କର ସ୍ୱଭାବ ସୁଷମା
ହର୍ଷ ବିଷାଦର ଗାଥା ।୨।

---

|| ୫ ||

ଏଇଦେଶ ମୋ ମାଆରେ
ଏହି ମାଟି ମୋ ମାଆ
ତାହାର ଶାନ୍ତ ସବୁଜ ଛାଇ
କୋଳକୁ ଡାକେ ଆ... । ୦ ।

ଝରଣା ନଦୀ ପାହାଡ଼ ବନ
ଫସଲ କ୍ଷେତ ସୁନାର ଧାନ
କମ କୋମଳ ଦେବ ମନ୍ଦରେ
ସୁନ୍ଦର ମୋର ଗାଁ । ୧ ।

ପଳାଶ ବନେ ମଶାଲ ଜାଳି
ଆସେ ବସନ୍ତ କାଳ
ଅତର ବୋଳା ପବନ ବହେ
ଫୁଟେ ହରେକ ଫୁଲ
ବଇଶାଖର ଖରାର ତାତ
ଝଡ଼ ଆମ୍ବ ତାଗର ଗାଡ
ଘୂମ୍ନେଇ ବନେ ମୋ ଜହ୍ନ ମାମୁଁ
ସରଗୁଁ ଡାକେ ଆ'ରେ । ୨ ।

ସଇନ ସର କାଳିଆ ମେଘ
ଆକାଶେ ହୁଏ ମେଳ ।
ବେଙ୍ଗୁଲି ନାମି ପୁଆଣୀ ହୋଇ
ଦଅଇ ହୁଳ ହୁଳି
ଶରତ ଆସେ ବରଷା ପରେ
କାଶ ତଣ୍ଡିର ଚଅଁର ଝୁଲେ
କାକର କାଚ ସରଗୁଁ ଖସେ
ସୁଉର ଦଦେ ଗାଁରେ । ୩ ।

ମରିବି ଏଇ ଦେଶ ଲାଗି ମୁଁ
କରିବି ତାର ପୂଜା
ଟେକି ରଖିବି ଜାତିର ଟେକ
ଗଉରବର ଧ୍ୱଜା
ଏ ଦେଶରେ ଯେତେ ମଣିଷ
ଗୋଟିଏ ଜାତି ଏକା ରକତ
ଜନମ କରି ଇତିହାସରେ—
ଲେଖିବି ନିଜ ନାଁରେ । ୪ ।

---

|| ୭ ||

ଏହି ମୋ ଜନମ ଭୂଇଁ
ପବିତ୍ର ଭାରତ ଭୂମି
ନୀଳ ପାରାବାର ଯା'ର ଧୂଏ ପୟର
ଗଂଗା ଯମୁନା କାବେରୀ
ମହାନଦୀ ଗୋଦାବରୀ
ନର୍ମଦା ସିନ୍ଧୁ ଯାହାର ଗଳାରେ ହାର
ହିମାଳୟ ମୁକୁଟ ଯା'ର
ଧରା ବୁକେ ଅଛି କାହିଁ ଉପମା ତା'ର ।୧।

ଯା' କୋଳେ ହେଲେ ଜନମ
ମହାବୀର ରଘୁତମ
ଶ୍ରୀକୃଷ୍ଣ ଅର୍ଜୁନ ଗାନ୍ଧୀ ରାମ ଚୈତନ୍ୟ
ଗାନ୍ଧାରୀ ପାଞ୍ଚାଳୀ କୁନ୍ତୀ
ଲୋପାମୁଦ୍ରା ଲୀଳାବତୀ
ସୀତା ସତୀ ପରଶରେ ଯା'ରେଣୁ ଧନ୍ୟ
ସେ ମୋ ଦେଶ ଚିର ମହତ
ଯା' ଆଲୋକେ ଆଲୋକିତ ସାରା ଜଗତ ।୨।

କ୍ଷୁଧାରେ ଦିଏ ଆହାର
ତୃଷାରେ ଯୋଗାଏ କ୍ଷୀର
ତା' ପାଣି ପବନେ ଗଢ଼ା ଆମରି ତନୁ,
ତା' ସେନେହ ମମତାର
କାହିଁ ଅଛି ପଟାନ୍ତର
ପାରିବୁନି ଦାନ ତା'ର ପାସୋରି ମନୁ
ମାଟି ମାଆ ସରଗ ସେହି
ତାହାର ସେବା କରିବୁ ଜୀବନ ଦେଇ ।୩।

॥ ୭ ॥

କବି ହେ……
ତବ ତୂଳି ମୁନେ ଫୁଟି ଉଠିଥିଲା
କଳିଙ୍ଗର ଗୁରୁଛବି ହେ ‥ । ୦ ।

ନଦ ନଦୀ ଗିରି ଦରି ସୁର ପକ୍ଷୀ
ଅଭ୍ରଗ କାକଳୀ ଝଙ୍କାରିତ ଝିଲ୍ଲୀ
ନିଖିଳ ସେବକ ଶାଶ୍ୱତ ସୁଷମା
ତବ ଅନୁରାଗ ଲଭିଛ ହେ··· । ୧ ।

ସୁନ୍ଦରେ ତୁଚ୍ଛର ଅବସାଦ ନାହିଁ
ଭ୍ରମରି ଉପମା କବି ତୁମ ପାଇଁ
କମ କଳାକାର ଅମର ସନ୍ତାନ
କବିତା ଗଗନ ରବି ହେ । ୨ ।

ପରାଧୀନତାକୁ ନବ ଚେତାବନୀ
ମହାଯାତ୍ରା ମହାକାବ୍ୟ ଯୁଗବାଣୀ
ହେ ପୁରୋଧା ତୁମେ ଢାଳି ଦେଇଗଲ
ସ୍ୱାଧୀନ ଯଜ୍ଞରେ ହବି ହେ । ୩ ।

ଶୋକହରା ଶୋଭା ଅପ୍ସରୀ ଭୁବନ
ଚିଲିକାରେ ବିକା ହେଲା ତବ ମନ
ହେ ଦରଦୀ ! ତୁମ ବଦାନ୍ୟ ସ୍ପର୍ଶେ
ପାଷାଣକୁ ଦିଏ ଦ୍ରବି ହେ । ୪ ।

ଦରବାରେ ହେଲେ ଯେତେ ଲୋକ ଠିଆ—
ସତ୍ୟସାକ୍ଷୀ ଦାଗୀ ଦେଲ ଖୋଷାଚଆଁ
ଲଳିତାକୁ ପ୍ରୀତି ରସେ ରସାଣିଲ
ରସରାଜ ରୂପ ସେବି ହେ । ୫ ।

ନଦୀ ପଠାପରେ  କାନ୍ଦଇ ନନ୍ଦନା
ବୈରଗଂଗ ପଦ୍ରେ ମନ ତା'ର ବନା
ଫେରିଗଲେ ତା'ର ଶବ ଶିବକାନ୍ତି
ସେ ଛବି ଯିବକ ଲଭିଚହେ   । ୬ ।

ଉତ୍କଳ ଶାରଳା-କାନନ-ବିହାରୀ
ଭକତ ରସିକ ତ୍ୟାଗୀ ପୂଜାରୀ
ବାଣୀଙ୍କର ସୂତ ରାୟ ରାଧାନାଥ
ବରେଣ୍ୟ ମହାନୁଭବହେ   । ୭ ।

ତବ ଯୋଗ୍ୟ ପୂଜା କରିନାହିଁ ଜାତି
କୁଶିକ୍ଷା ତମସା, ପାହି ନାହିଁ ରାତି
ଦିଅ ଶୁଭାଶିଷ  ଦିବ୍ୟଲୋକୁ ଥାଇ
ଜନଗଣ ମନ କବ ହେ   । ୮ ।



—ରାଧାନାଥଙ୍କ ଶ୍ରାଦ୍ଧ-ବାର୍ଷିକୀ ଉପଲକ୍ଷେ—

॥ ୮ ॥

ଏମ କଳା ନୀଳା ଭୂମି କଳିଙ୍ଗ ମୋ ଜନନୀ
ପ୍ରାଚୀ ଖଣ୍ଡେ ଜମ୍ବୁ ଟିକା ସଉଭାଗ୍ୟଶାଳିନୀ ।୦।

ବନ୍ଧ୍ୟ ପାର ସାରସ୍ୱତ କ୍ଷୀର ସ୍ରୋତ ପ୍ରସୂତି
ଶତ ପୋତ ପୂତ ଭେଳା ପ୍ରଶ୍ରୟମୟୀ ଖାରଣ
କଳାକାର ଉତ୍କଳୀୟ ବରଣୀୟ ସ୍ମରଣୀୟ
ନୀଳ ଘନେ କାଦମ୍ବିନୀ ବଳାକିକା ମାଳିନୀ ।୧।

ଭଞ୍ଜ କବି ମଂଜୁ ଦେଶ କୁଂଜ ବନ ସୁନ୍ଦର
ହୃଦ ମୋଦ ପ୍ରକାଶକ ଭାବ-ଭାଷା ଚନ୍ଦର
ମୋକ୍ଷ ପାବନ୍ତୁ ମେଖଳା ରୁକ୍ମିମନ୍ତ ରମ୍ୟ ବେଳା
ଶସ୍ୟ ଶ୍ୟାମଳା ସୁଫଳା ନୀଳ ଗିରି ମାଳିନୀ ।୨।

ଧାନ କ୍ଷିଁଷା ଶିଖି ଦେଇ ମାର୍ଗଶୀର ଆସଇ
କେକୀ ପ୍ରେମରେ ମଗନ ସୁଖେ କେକା ନାଚଇ
ପତତ୍ରୀର କଳରୁତ ମଧୁତର ଅମୃତ
ରଜତ ଧବଳ ଜ୍ୟୋସ୍ନା ଶୋଭମୟୀ ଯାମିନୀ ।୩।



॥ ୯ ॥

ଜନ୍ମିଲେ ବୁଦ୍ଧ ଯୀଶୁ ଶଂକର
କନ୍‌ଫୁସିୟସ ଜନ୍ମେ କବୀର
ଗୁରୁ ନାନକ ରାମ ରାମାନନ୍ଦ
ତୁକାରାମ୍ ମହମ୍ମଦ
ବିଶ୍ୱବାସୀ ହିଂସା ଦ୍ୱେଷ ହତ୍ୟାକର ବନ୍ଦ
ସତ୍ୟଶାନ୍ତି ଦୟା କ୍ଷମା ତ୍ୟାଗ ପଥ ଧର
ପଶୁ ନୋହୁଁ ତୁ ମଣିଷ ହୁଆ ମଣିଷ କାମ କର । ୧ ।

ବାଣଭଟ୍ଟ ମାଘ ବ୍ୟାସ
ଗୁଣାଢ୍ୟ ତୁଳସୀ ଦାସ
କବି କାଳିଦାସ ଭବଭୂତି ଭାରବୀ
ଦେଖାଇ ଗଲେ ଅନବଦ୍ୟ କାବ୍ୟର ଛବି
ବିଶ୍ୱବାସୀ ଭାଇ ଭାଇ ନାହିଁ ପରାପର
ପଶୁ ନୋହୁଁ ତୁ ମଣିଷ ହୁଆ ମଣିଷ କାମ କର । ୨

ଚନ୍ଦ୍ରଗୁପ୍ତ ବିନ୍ଦୁସାର
ଅଶୋକ କନିଷ୍କ ଖାର
ପୃଥ୍ୱୀରାଜ, କପିଳେନ୍ଦ୍ର ହର୍ଷ ବର୍ଦ୍ଧନ
ତାଙ୍କ କହିଗଲେ ବିଶ୍ୱବାସୀଏ ଶୁଣ
ଦେଶ ଜାତି ଲାଗି ମର ରହିଯା ଅମର
ପଶୁ ନୋହୁଁ ତୁ ମଣିଷ ହୁଆ ମଣିଷ କାମ କର । ୩ ।

ଲୋପାମୁଦ୍ରା ବିଶ୍ୱଧାରା
ଖନା ଦେବହୂତି ତାରା
ଗାର୍ଗୀ ମୈତ୍ରେୟୀ ଆତ୍ରେୟୀ ନାରୀ ବିଦୁଷୀ
ତାଙ୍କ କହିଗଲେ ଶୁଣହେ ବିଶ୍ୱବାସୀ
ବିଶ୍ୱବୋଲେ ସନ୍ତ ମଣିଷ ମୁକ୍ତି ପଥଧର
ପଶୁ ନୋହୁଁ ତୁ ମଣିଷ ହୁଆ ମଣିଷ କାମ କର । ୪ ।

●

॥ ୧୦ ॥

ଗୌତମ ଜୈମିନ ବ୍ୟାସ ପାତଞ୍ଜଳି
ପ୍ରାଚୀନ ଭାରତ ଦାର୍ଶନିକ
ଭୃଗୁ ଆର୍ଯ୍ୟଭଟ୍ଟ ବରାହ ମିହିର,
ରଖିଛନ୍ତି ଆର୍ଯ୍ୟଜାତି ଟେକ ।୦।

ପାଣିନୀ ଅନ୍ନଭଟ୍ଟ ବରରୁଚି
ଖୋଲିଦେଲେ ଏ ଜାତିର ଜ୍ଞାନଚକ୍ଷୁ,
ଶ୍ରୀକୃଷ୍ଣ ଚୈତନ୍ୟ ରାମାନୁଜ ମହାମହିମ
ଏ ଆର୍ଯ୍ୟ ତେଜ ଓଜଃ
ଭଜ ବାସୁଦେବ ଶ୍ରୀ ହର୍ଷ ବର୍ଦ୍ଧନ
କବି ଜୟଦେବ ଶ୍ରୀ ଋଣକ୍ୟ ।୧।

ପୁରୁ ଚନ୍ଦ୍ରଗୁପ୍ତ ଖାରବେଳ
ବିକ୍ରମ ଆଦିତ୍ୟ ମହାବଳ
ପଦ୍ମିନୀ ପାନ୍ନା ଲୀଳାବତୀ
ଲକ୍ଷ୍ମୀ ଦୁର୍ଗାବତୀ ମହାଦେବୀ
ଶିବାଜୀ, ସିରାଜ, ଟିପୁସୁଲତାନ
ଉଜ୍ଜ୍ୱଳ କଲେ ଏ ଜାତି ମୁଖ ।୨।



॥ ୧୧ ॥

ଜାଗରେ ବପ୍ଳବୀ ଉତ୍କଳୀ ପାଇକ
ତନ୍ଦ୍ରା ତେଜ ମନ୍ତ୍ର ନାଦେ ଜାଗେ
ଜାଗ୍ରତ ବିପ୍ଳବେ ତୃଷିତ ଖଡ୍ଗ
ଫିରିଙ୍ଗି ରକ୍ତ ମାଗେ ମାଗେ । ୦ ।

ଗାଅ ଜ୍ୱାଳାମୟୀ ଜାଗରଣ ଗୀତ
ବହ୍ନି ଜଳୁ ଜାତ ଗୁତ ହାଡ଼େ
ମୁକ୍ତ କର ମାତ ବନ୍ଧନ ସନ୍ତାନ
ବକ୍ସି ଜଗବନ୍ଧୁ ରକ୍ତ ଗୁଡ଼େ । ୧ ।

ସୁପ୍ତ ନେବେ ବୋଲି ଦିଅ ରକ୍ତରାଗ
ଶକ୍ତ ବୁକେ ଦିଅ ଶକ୍ତ ଢାଳ
ଯାଉ ସେ ବିଦେଶୀ ସପ୍ତ ସିନ୍ଧୁ ପାରେ
ଲିଭିଯାଉ ପରାଧୀନ କାଳ । ୨ ।

ଅଜାତିଆ ଆସି ଜାତି ନେଲା ଆମ
ନେଲା ପୁଣି ମାନ ସନମାନ
ଆମେ ପରା ଖାରବେଳ ବୀର ବଂଶୀ
ନୋହୁ ସାନ ଅରକ୍ଷିତ ସ୍ଥାନ । ୩ ।

ପ୍ରାଣଦାନ ଅବା କରମ ସାଧନ
ପଣ ନେଲ ଆଜି ପାଇକରେ
ନାହିଁ ଭୟ ବଡ଼ ଦେଉଳ ଠାକୁର —
ଜଗନ୍ନାଥ ଆମ ନାୟକରେ । ୪



## ।। ୧୭ ।।

ଜାଗେ ଯୁବଶକ୍ତି ଜାଗେରେ, କର୍ମବୀର କର୍ମ ମାଗେରେ
ସୁପ୍ତ ସିଂହ ରକ୍ତ ଆଖି ଟେକି ଗୃହେଁ ଗର୍ଜନ ।୦।

ରକ୍ତ ନାଦ ମୁକ୍ତି ଗୀତ ଖେଳେ ମୁକ୍ତ ପବନ
ଜୟ ଶଂଖ ବାଜେରେ, ଅଗ୍ର ଦୂତ ଚଳେ ଆଗେରେ ।୧।

ଡାକେ ଝଂଜା, ଡାକେ ଝଡ଼ ଡାକେ ବନ୍ୟା ବିପତ୍ତି—
ଜାଗେ ଚିର ସବୁଜ ମୋ ଦେଶ ମାତା ସମ୍ପତ୍ତି ।
ପୁଂଜିବାଦ ଭଙ୍ଗେରେ, ସାମ୍ୟ ଶାନ୍ତି ନବ ଯୁଗରେ ।୨।

କଲ୍ଲି ତୁଳେ ଯୁଗଯୁଗର ଯବନିକା ଉଠିଲା—
ପ୍ରାଚୀନଭେ ନବରବି ଶୁଭ ଶିଖା ଫୁଟିଲା,
ଧର୍ମ ଯୁଦ୍ଧ ଲାଗେରେ, ଦେଖ ବୀର ରକ୍ତ ପ୍ଲାବେରେ ।୩।



"ଧନୀକ ବଣିକମାନଙ୍କ ଦ୍ୱାରା ଶାସନ ତନ୍ତ୍ରର ନୌକା ଚାଲେ । ଏଙ୍ଗ ମୋଡ଼ନ୍ତି ସେହିମାନେ । ଶାସନ ଚଳାନ୍ତି ପୂର୍ବ ପର-ଅତ୍ୟାଚାର ପ୍ରିୟ ପ୍ରୀତି ତୋଷଣ ।"

—ରାଜଦ୍ରୋହୀ—

॥ ୧୩ ॥

ଜାଗ୍ରତ ଆଜି ଭାରତ ଜନତା
ହିମାଚଳ ଶିରେ ଠିଆହି
କୋଟି କଂକାଳର ଜଡ ଅଚେତନ
ଚକ୍ଷୁରେ ରକ୍ତ ବହି ।୦।

ଶୁଣ ଶୁଣ ଆରେ ଚୀନା ଶାସକ,
ସ୍ଥିର କର ମନ ବଳ
କୁମାରିକା ଠାରୁ ଉଠେ ଦୁନ୍ଦୁଭି
ରଣ ତାଣ୍ଡବ ରୋଳ
ଦୁର୍ଦ୍ଦାନ୍ତ କେନ୍ଦ୍ର ଗୁଣ୍ଡାଙ୍କ ପାରିବ,
ସ୍ୱାଧୀନତା ପ୍ରିୟ ଯା'ର
ନିଜ ଠାରୁ ବଳି ସମ୍ମାନ ଥାଏ
ଦେଶଜାତୀ ପତାକାର
ଭାରତ ଭୂମିର ବାଳ-ବୃଦ୍ଧ-ଯୁବା
ନିତ୍ୟ ଯାହାର କର୍ମ ଦେଶସେବା
କ୍ଷୁବ୍ଧ ନୟନେ ଚାହିଁଛନ୍ତି ତୁମ
ରକ୍ତ ଶୋଷଣ ପାଇଁ ।୧।

ସ୍ୱାଧୀନ ଦେଶର ଆଗୁଆ ଜଓ୍ୱାନ
କରେ ଧରି ରାଇଫଲ
ଗୁଳି ବାରୁଦର ବାତ୍ୟା ଛୁଟାଏ
ଜନ୍ମେ ବନାନୀର ଶିର
ଘର୍ଘର ନାଦେ ଟ୍ୟାଙ୍କ ଧାଉଁଛି
ଝଙ୍କୃତ ମେସିନ୍‌ଗନ୍
ଶୈଳ ଶିଳାର ବକ୍ଷ ଫଟାଇ
ଚାଲେ ଭାରତ ଜଓ୍ୱାନ୍ ।୨।

ଆକାଶ ବଦାର ହେଲ୍‌କେପ୍‌ଟର
କ୍ଷଣକେ ଉଡ଼ିଯାଏ
ମହାଶୂନ୍ୟରେ ସାହସୀ ଜଓ୍ୱାନ,
ବଳସ୍ତ ଗୀତ ଗାଏ
ଗୁଣ୍ଡ ସୀମାରେଖା ବବ୍ବର ଶୂଇନା
ଯୁଦ୍ଧ ଇଚ୍ଛାକର ଘଟେ ନାହିଁ ଦାନା
ଗୋଟିଏ ମକାରେ ମୁଠିଏ ଲଙ୍କାରେ
ହେବଜରେ ଯୁଦ୍ଧ ଜୟ ।୩।



## ॥ ୧୪ ॥

ଜୟ କଳିଙ୍ଗ ଜନନୀ
ନୟ ମଣି ମୌଳିନୀ ରମ୍ୟବେଳା
ଦୁର୍ଗଶାଳିନୀ ବନ୍ଦ୍ୟା ଉତ୍କଳ
ତଟିନୀ କଳ କଳ ଚର ଚଞ୍ଚଳା
ନର୍ଝର ଝର ଝର ଶ୍ୟାମ ଶଇଳ
କବି କୁଞ୍ଜ ବନ ମଲ୍ଲୀ ମାଲା । ୧ ।

ମୋକ୍ଷ ପାବକ୍ଷ ବକ୍ଷଶୋଭିନୀ
ଗଂଗା ଗୋଦାବରୀ ଭୂଷଣଶାଳିନୀ
ତୃଣାଚ୍ଛାଦିତ ଘନ ବନାନୀ
ସାଗର ବେଳା ପୋତ ମେଖଳା । ୨

ଚିଲ୍କା ତୋଳି ବୋଇତ ପରେ
ଉତ୍କଳୀ ଚଳେ ସାଗର ପାରେ
ଭକ୍ତି-କବିତା ସଂଗୀତ ସ୍ୱରେ
ବିଶ୍ୱ ସାହିତ୍ୟ କଳା କମଳା । ୩ ।



## || ୧୪ ||

ତୁମ ହାତେ ଅଛି, ଶାସନ ଦଉଡ଼ି
ବେଡ଼ି କୋରଡ଼ାର ମାଡ଼
ତୁମେ ଏ ଜଗତେ ଦନ୍ତ
ମାଉଁସ ଚପୁଡ଼ି, ରକତ ନଗାଣ୍ଡି
ଓଜନକରୁଛ ହାଡ଼ । ୦ ।

ମଣିଷର ଛାଲ ଛେବାଉଛ ତୁମେ
ଶ୍ୱାନ ପଶୁ ହୀନଚେତା
ବଚନ ବାଗୀଶ ଦାତାଗ୍ରାମ ବେଶୀ
ହୋଇଛ ଅଟର ମତା
ଧନ-ଧର୍ମୀ ହେ ଧ୍ୱଂସ ଦ୍ରୋହିତ
ଏବେ ରାଜଗାଦ ଗୁଡ଼ । ୧ ।

(ଆମ) ଘରେ ନାହିଁ ଭାତ ହାହା ରାଜପଥ
ତୁମକୁ ନହୁଏ ନନ୍ଦା
ମଚୁଡ଼ି ମଡ଼କେ ଦେଇକଲ ଆଜି ବି
ଖୋଜୁଛୁ ମଶାଣି ପଦା
କଳା ଅନ୍ଧକାର ଯମରାଜ ତୁମେ
ଯନ୍ତ୍ର ଗାତ ନଆଁ ରଡ଼
ହୋଇଛ ଜଗତେ ବଡ଼ । ୨ ।

ଗରବ ଗୁଡ଼ରେ ହାଡ଼ ମାଳ ମାଳ
ବାର ବାର ଉଠେ ଥର
ଧମାଙ୍କ ଧକ୍କାରେ ମୁଣ୍ଡା ମୁଣ୍ଡା ଲାଞ୍ଛ
ଗଲ ଗଲ ପଡ଼େ ଝର
ଶୋଣିତ ଲୋତକ ଏକାକାର ହୁଏ
କାଟି ହଥ ବାଧା ବାଡ଼
ହେବ ଯଦ ତୁମେ ବଡ଼ । ୩ ।

○

## ୧୬

ଏଣେ ଆଗାମୀ ଯୁଗର ଗାଆଁ
ଆମ ନୂଆ ଭାରତର ଗାଆଁ
ପିଚୁ ଢଳା ପ୍ରତି ଗାଆଁକୁ ସଡ଼କ
ସୁଶୀତଳ ଗଛ ଫୁଲର ମହକ
ନୀଳ ବସନା ମୋ ମାଟିମା ।୧।

ବାର ମାସୀ କ୍ଷେତ ହସେ ଝଲମାଲ
ଚଳୁଛି କଳ ଲଙ୍ଗଳ
ଖସ୍ୱାଦନରେ ବି ବେଙ୍ଗ ରଡ଼ିଦିଏ
ବିଜୁଳି ତୋଳୁଛି ଜଳ
ମୋଟର ବୋହୁଛି ଧାନ ମୁଗ ବିରି
ଜଡା ଯବ ଡଲ କୋଳଥ ଖେସାରି
କାଟେ ଫସଲ ସୁନାର ଦାଆ ।୨।

ଲମ୍ବାଳିଆ ଗାଁ ର ମହଲ କୋଠା
ସାମନେ ଫୁଲ ବଗିଚା
ଦୁଇ ପାଖେ ଘର ଚଉଡ଼ା ଦାଣ୍ଡରେ
ରୋଗ ଶୋକ ଭେକ ନିକାଶ ହୋଇଛି
କଳ କାରଖାନା ବିକାଶ ପାଇଛି ।
ଚୁଲେ ଆକାଶେ ଚେମିଣି ଧୂଆଁ ।୩।

ଉଡ଼ାଜାହାଜକୁ ରସ୍ତା ମିଳୁନାହିଁ
ଭୂଇଁରେ ପଡ଼ୁଛି ଗଛ
ହେଲିକେପ୍ଟର ଅନ୍ଧ ଦରକାସ୍ତ
ରସିଦ୍ ଆଣୁଛି ବୋହି
ସଂଜୁଆଳୀ ଟେଲିଭିଜନ ଭାଷଣ
ଶୁଣୁଛନ୍ତି ବସି ଗ୍ରାମ ବାସୀ ଗଣ
ଦେଶ ବିଦେଶର ଖବର ନୂଆ ।୪।

ପକେଟ ରେଡ଼ିଓ କାନ୍ଧରେ ଝୁଲାଇ
କୃଷୀଭାଇ କରେ ଚାଷ
ଅଙ୍ଗୁର ବେଦନା ସେଓ ନାସପାତି
ଫଳଧରେ ବାର ମାସ
ରକେଟ ଆମର ବୁଲେ ଗ୍ରହ ଲୋକେ
କେବେ ବା ମଙ୍ଗଳ କେବେ ଶୁକ୍ର ପାଖେ
ନିତି ଖୋଜେ ଅସୀମର ରାହା ।୫।

ଶୁକୁମା ଶୁକୁଟା ଗମ୍ଭୀର ଆଖିଆ
ମଣିଷ ନାହାନ୍ତି ଆଉ
ଚମ ଢୁଙ୍କୁ ଧୁଙ୍କୁ ହାଡ ମାଉଁସରେ
ଜମିଛି ଚଟକା ଲହୁ ।
ମାଛ ଘିଅ ଦୁଧ ନାନା ଜାତି ଫଳ
ବଢାଇ ଦେଇଛି ଏ ଜାତିର ବଳ
ଭାସେ ସୁଖ ଦରିଆରେ ନାଆ ।୬।



"ସବୁ ଅଡ଼େ ବୁଲି ଦେଖିଛି, ଉଚ୍ଚାସନରେ ବସିଲା ପରେ ଗରିବ ଦୁଃଖୀଙ୍କ କଥା ସମସ୍ତେ ଭୁଲି ଯାଆନ୍ତି, ଯାହାଙ୍କ ଦ୍ୱାରା ସେମାନେ ସେ ଆସନ ପାଇଲେ ତାଙ୍କୁ ସେ ଚିହ୍ନି ପାରନ୍ତି ନାହିଁ ।

— ରାଜଦ୍ରୋହୀ

## ॥ ୧୭ ॥

ଦୂର ଧୂମାୟିତ ଚକ୍ରବାଳ ସେପାରେ
ଯହିଁ ପାହାଡ଼ର ମେଘନାଦ ଡାକେଣି
ବୀର ପାଇକ ଆଗେ ମାଡ଼ି ଯାଏ ।୦।

ଚଳେ ରୁକ୍ଷ ଜୀବନ ଶୋଭାଯାତ୍ରା
ଊର୍ଦ୍ଧ୍ୱେ ସପ୍ତର୍ଷୀ ମଣ୍ଡଳ ରାସ୍ତା
ଚିର ସଂନ୍ୟାସୀ ଯୁଗଗୀତ ଗାଏ ।୧।

ଏବେ ଜଳେ ଲାଲ ପଶ୍ଚିମ ଆସମାନ୍
ତହିଁ ବାରୁଦର ପରମାଣୁ ଭାସମାନ
ଝଂଗି ଗୁଣ୍ଡାମି ଭଣ୍ଡାମି ଫିକର
ଆଉ ମଣିଷ ହେବେକି କାହା କିଂକର
ସବୁ ଅଭିଯୋଗ ଅସନ୍ତୋଷ କ୍ରନ୍ଦନ
ଅଗ୍ନି ଆହୁତେ ମିଶି ମିଶି ଯାଏ
ଚିର ସଂନ୍ୟାସୀ ଯୁଗଗୀତ ଗାଏ ।୨।



॥ ୧୮ ॥

ମଣିଷ ଜାତକୁ ଡାକ ଦେନ୍ତେ ଗଣ ନବ
ଚରମ କପାଳେ ହାତର ପାପୁଲି
ଘଷି ହୋଇ ଯିବ ଯିବ ।୦।

କେନ୍ଦେ ଆସେ ଭୋକ ନିଶ୍ୱାସ ଝଡ଼ ଉଠେ
ଭୋକିଲା ଜନତା ଶୁଖିଲା ଓଠକୁ ଚାଟେ ।
ଦାରୁଣ ଅଭାବ ମିଳୁ ନାହିଁ ତେଲ ଲୁଣ
ଲୁହ ନିଶ୍ୱାସରେ ଗାଳି ଉଠିଲାଣି ଫେଣ
ଦୀପ ନିଭିବ ଏବେ ଯୁଦ୍ଧ ନିଆଁ ଜଳେ
ଦେଖ ହେ ନରକ ଛବି ।୧।

କ୍ଷମତା ମଦୁଆ ଜନନେତା ମହାବାହୁ
ହାତରେ ମାରୁଛି ଭାତରେ ମାରନା ଆଉ
ସ୍ଥୂଳ ଉଦର ପରର ରକତ ଶୋଷି,
ଚଳାବନ୍ତ ଆଉ ନିଷ୍ଠୁର ଦଗାବାଜି
କାଠ ଛୁଟଡଙ୍କୁ ପଥର କଲିଜା
ବାଢ଼ିଛି ଯୁଗର ଦାବୀ ।୨।

ଗଞ୍ଜାର ନିବାଡ଼ ବନ୍ଧୁବର ଆସେ ନଇଁ,
ସଭ୍ୟତା ପଦେ କୋଟିଏ ସଲାମ ନେଇ ।
ସାଧୁ ବୋଲାଇଲେ ଟଙ୍କି କଣ୍ଠା ଦାଗୀ ଖୁଣୀ
ମଣିଷ ଶବରେ ଦୁଲିଲା ଯମର ମୁଣି ॥
ଶୋଷଣ ଜବଣ କେବେ ହେବ ଶେଷ
ଭଣିଲେ କେଶବ ଭକ୍ତ ।୩।

## ॥ ୧୯ ॥

ମନୀଷ ମଂଗଳ ଜ୍ୟୋତି ଶୁଭ ଶାନ୍ତ ଗନ୍ଧାଧର
ସୃଷ୍ଟିର ସୁଗନ୍ଧ ପୁଷ୍ପ ଭାରତ ଜନନୀ ମୋ'ର ।୦।

ପ୍ରାଚ୍ୟ ପ୍ରତଚ୍ୟ ପ୍ରଗତି ଅନାଦି ଯୁଗ ସଂସ୍କୃତି
ସୁନ୍ଦର କାଞ୍ଚନଜଂଘା ଗଙ୍ଗୋତ୍ରୀର ସ୍ୱଚ୍ଛ ନୀର ।୧।

ଶୁଭ୍ର ଜ୍ୟୋତ୍ସ୍ନା ଧବଳତା-ଚର୍ଚ୍ଚିତ ଧରାପରେ
କଳାକମଳା ବିଳାସ ଛବିଳ ତଟିନୀ ହାରେ
ହୃଦ୍ୟା ଫଳଦା ମାତା ତାଳ ତମାଳ ଶୋଭିତା
ବେଳା ବିସ୍ତୃତ ସାଗର ଉର୍ମି ତରଙ୍ଗ ଭଙ୍ଗୁର ।୨।

କାଳର କାଳିମା ଧୋଇ ବୁଦ୍ଧ ଦେଶେ ଶୁଦ୍ଧ ଶାମ
ବେଦ ବାଇବେଲ, ଗୀତା, ଉପନିଷଦ, କୋରାନ
ମନ୍ଦିର ମସଜିଦ, ଗୀର୍ଜା ଜନ ସଂସ୍କୃତି ଅସୀମ
ଶୀଳ ପ୍ରାନ୍ତଭଙ୍ଗ ସୁଚେତ ପ୍ରଜ୍ଞାବନ୍ତ ଧୈର୍ଯ୍ୟଧର ।୩।

ଶତ୍ରୁ ଉତ୍ପୀଡ଼ନେ ମାତା ପିଂଗଳ ଆଗ୍ନେୟକେଶା
ଧୂସର ଧୂମାଳ ଧ୍ୱାନ୍ତ ଭୀମ ରଣଚଣ୍ଡୀ ବେଶା
ବିଶ୍ୱ ତଟେ ସୃଷ୍ଟି କରି ଅଟ୍ଟହାସ୍ୟ ନାଟ୍ୟଲୀଳା
ଗର୍ଜେ ନୀଳ ସିନ୍ଧୁ ଟଳେ ଶାନ୍ତିର ମହାପ୍ରାଚୀର ।୪।

॥ ୨୦ ॥

ମୁହିଁ ବିଶାଳ ଉତ୍କଳ ଝିଅ
ମୁହିଁ କଳିଙ୍ଗର ବୀର ଝିଅ
ମହ ନଦୀ ଯହିଁ ମହାନନ୍ଦେ ବହେ
ମହା ମହିମମୟୀ ମାଟି ମାଆ
ମୁଁ ସେହି କଳିଙ୍ଗର ଝିଅ ।୦।

(ଯହିଁ) ଶୈଳ ଗୁହା ଭେଦ ଝରଇ ନର୍ଝର
ଅଶାନ୍ତ ଉଚ୍ଛଳ ଝରଣା ଝର୍ଝର
ନୀଳ ଉର୍ମିମୟୀ ବାତ୍ୟା ବର୍ଦ୍ଧିତ
ସପ୍ତକୋଣୀ ଗଣ୍ଡ ପ୍ରଧାନ ପ୍ରପାତ
ମୁଁ ସେହି ରାଇଜର ଝିଅ
ମୋ ଗୁଡ଼ ଇସିପାତ୍ ଲୁହା । ।୧।

କଳଙ୍ଗ ବିରୂପା ଋଷିକା ବ୍ରାହ୍ମଣୀ
ଚନ୍ଦ୍ରୋତ୍ପଳା ସ୍ୱର୍ଣ୍ଣରେଖା ବୈତରଣୀ
ଖଣ୍ଡଗିରି ଉଦୟଗିରି ମେଘାସନ
ବିରାଜିତ ଯହିଁ ଶତ କୀର୍ତ୍ତି ମାନ,!
କିଏ ନଜାଣେ ମୋ ଦେଶ ନାଆଁ । ।୨।

ମୁଁ ମହାନ୍ ଦେଶର ଝିଅ
କଳା ହସ୍ତକର୍ମ ଉତ୍କଳ ନାମ
ସବୁ ବଡ଼ ଯହିଁ ମୋ ଗାଁ ଟି ସାନ
ବଡ ଦେଉଳରେ ବଡ ଦିଅଁ ହସେ
ବଡ ଦାଣ୍ଡକୁଟ ବଡ ପଣ୍ଡା ମିଶେ
(ସେହି) କଳିଙ୍ଗ ମୋ ମାଟି ମାଆ
ମୁଁ ସେହି ରାଇଜର ଝିଅ । ।୩।

ବେଳାଭୂମି ଯା'ର ସଦା ମୁଖରିତ
ଦେବୀ ବ୍ରହ୍ମାଣୀଙ୍କୁ ପ୍ରାଣ ଅରପିତ
ଏଇ ଗାଁ କବି ଏଇ ମାଟି ଦାସ
ଲେଖନ୍ତି କବିତା ପୁଣ୍ୟ-କେଳି-ଗ୍ରନ୍ଥ
ସ୍ୱର୍ଗ୍ୟବଣ୍ଣ ମୋର ପଲ୍ଲୀ ମା
ମୁହଁ ରଖିବ ମୋ ଦେଶ ନାଁ [illegible]



॥ ୨୧ ॥

ଯୁଗରେଖା ରମ୍ୟ କ୍ଷେତ୍ର
ମହାସ୍ଥାନ ମହାମଠ
ବିମଳ କୀରତ ଯୁଗେ ଯୁଗେ ରହିବ ।
ନିଗମ ନ୍ୟାୟ ବିଗ୍ରହ
ଶୁଦ୍ଧ ସତ୍ୟ ପୁଣ୍ୟାଗ୍ରହ
ବିଶ୍ୱ ତପୋବନେ ଇତିହାସ ଗାଇବ ।
ପବିତ୍ର ଏ ଭାରତ ଭୂମି
ସାମ୍ୟ ବିଗ୍ରହକ ତବ ଚରଣ ଚୁମି ।୧।

ଚିର ପୂତ ଆର୍ଯ୍ୟ ଜାତି
ନିଜ ପୁତ୍ର ଶିର କାଟି
ଦାତାକର୍ଣ୍ଣ ବ୍ରାହ୍ମଣଙ୍କୁ ଦେଲେ ଭୋଜନ ।
ହରିଶ୍ଚନ୍ଦ୍ର ମହାମତି
ନିଜ ପତ୍ନୀ ଶୈବ୍ୟା ସତୀ
ସତ୍ୟର ସେବକ ରାଜା ଶୁଝିଲେ ଋଣ ।
ବନବାସେ ଚାଲିଲେ ରାମ
ସତ୍ୟ ସଂଧ ବୀର ନବନୀରଦ ଶ୍ୟାମ ।୨।

ଶ୍ୟାମଳ ଗିରି ମେଖଳା
ରାଜ୍ୟ ଶିଳା ଲିପି ମାଳା
ଯୁଗ ଯୁଗାନ୍ତ ଥୁଆ ଅମର ବାଣୀ ।
ବେଦ ବେଦାନ୍ତ ସଂହିତା
ପରମ ପୁରାଣ ଗୀତା
ମଞ୍ଜୁଳ କାବ୍ୟ କବିତା କୌସ୍ତୁଭ ମଣି
ଗାଉଛୁ ସତ୍ୟ ବନ୍ଦନା
ଧ୍ୟାନ ସଂଯମ ଈଶ୍ୱର ଚିର କାମନା ।।୩।

## ୨୨

ଶାନ୍ତି ପ୍ରଗତି ସଂକେତ ଦେଇ
ଆସିଲ ଅଗଷ୍ଟ ପନ୍ଦର
ହେ ବନ୍ଧୁ, ଅଗଷ୍ଟ ପନ୍ଦର
ବଂଶ ବର୍ଦ୍ଧିଷ୍ଣୁ ବିକ୍ରମୀ ବୀର
ବନ୍ଦିତ ଚିର ସୁନ୍ଦର ।୦।

ଗାନ୍ଧି ଆଶିଷେ ମଣ୍ଡିତନ୍ତୁ
ଜନ୍ମ ତୁମର ମହୀତଳେ
ଦୃଷ୍ଟି କର ହେ ସୃଷ୍ଟିର ବୁକେ
ଧ୍ୟାନ ଗରିମା ତ୍ୟାଗ ବଳେ
ଦୁଃଶାସନର ଶାସନାଶନ ଗାଇ ଯାଅ ଯୁଗ ମନ୍ତ୍ର
ହେ ପ୍ରିୟ ଅଗଷ୍ଟ ପନ୍ଦର ।୧।

ବାଧାବନ୍ଧନର ବାଘ ଗର୍ଜନେ
ଜାଗ୍ରତ ତୁମ ପ୍ରାଣ ମନ
ଚିର ଅବିନାଶି ଜ୍ୱଳନ୍ତ ପାବକ
ନନ୍ଦିତ ତୁମେ ମହାସ୍ଥାନ୍
ଶତ ଶିଖାଇତ ଦୀପ୍ତି-ଆଲୋକେ
ଆଲୋକିତ ତୁମ ଅନ୍ତର
ବିପ୍ଳବୀ ଅଗଷ୍ଟ ପନ୍ଦର ।୨।



## ॥ ୨୩ ॥

ଶାନ୍ତି ମୁକ୍ତି ପ୍ରଚାରର ବାଣୀ କଲ ପ୍ରଚୁର,
ସାଗର ମଥ ସନ୍ତ ତୁମେ ଗାନ୍ଧି ଚିର ସୁନ୍ଦର ।୦।

ବିଶ୍ୱ ନଭେ ତବ ଶୁଭ ଜ୍ୟୋତି ନାଶେ ଅନ୍ଧାର,
ହିଂସା ଭୁଲେ ଅହିଂସା ଅମର ତବ ରଚନା
ଗୁଳି ଗୁଳା ବିଷ ଧୂଆଁ ପାଇନାହିଁ ଶୋଚନା,
କାନ୍ଦା କାରାଗାରେ ବାପୁ କଲ ସତ୍ୟ ସାଧନା
ଚିର ଅମଳିନ ତୁମ ରାମ ରାଜ୍ୟ କଳ୍ପନା,
ଭଜିବ ଜଗତ ତୁମ ନବ ଯୁଗ ମନ୍ତ୍ର ।୧।

ତବ ତୂର୍ଯ୍ୟନାଦ ଶୁଣି ବୃଷୀ ମଜଦୁର ହେ,
ଡାକ ଦେଲେ ଲାଲକିଲ୍ଲା ନାହିଁ ବେଶି ଦୂର ହେ,
ଚକାସନେ ଠେକାଭଣ୍ଡି ବସିଥିଲ ଫିରିଙ୍ଗି,
ନାଟମ ଚରଚାଲ୍ ଗରବ ଗଲା ଭାଙ୍ଗି
ନୈରାଶ୍ୟ ପତ୍ରଣ ଶାଳେ ଫୁଟେ ରକ୍ତ ମନ୍ଦାର ।୨।



ଭୟ, ଦୁଃଖ, ଲଜ୍ଜା ସବୁ ମୁଁ ମୁଣ୍ଡପାତି ସହିନେବି ହୃଦୟରେ ସହି ନେବି ସହସ୍ର ବଜ୍ରାଘାତ । ଦେହରେ ବୋଳି ନେବି କଳଙ୍କ ନିଷ୍ଠୁର ହାତରେ ଛଡ଼ାଇବ ମାୟା ବନ୍ଧନ-ପଦ ମୁଁ ସର୍ବହରା ଜନ୍ମଭୂମି ମୁହଁରେ ହସ ଫୁଟାଇ ପାରେ ।

— ରାଜଦ୍ରୋହୀ

॥ ୨୪ ॥

ଶ୍ୟାମଳ ସୁକୋମଳ ସ୍ନିଗ୍ଧ ତୃଣାସନେ
ରଞ୍ଜିତ ସୁଶ୍ୟାମ ଅଙ୍ଗ
ବିଶ୍ୱ ବିମୋହିନୀ ଜନ୍ମଭୂ ଜନନୀ
କରୁଣାମୟୀ କଳିଙ୍ଗ ।୦।

ବିହଗ କାକଳି ଉଠେ କାନନ କୁଞ୍ଜେ
ସୁଶୋଭିତ ବେଣୀ ତବ ସୁମନସ ପୁଞ୍ଜେ
ଗୋପ ସିନ୍ଧୁ ବେଣୁନାଦେ ମୁଖରିତ ନୀଳିମା
ଅଙ୍ଗନେ ମୁଗ୍ଧ କୁରଙ୍ଗ ।୧।

ନୀପ ତମାଳ କଥା ଅଶୋକ ପଳାଶେ
ମୁକୁଳା ବକୁଳପାଶେ ମଧୁକର ବିଳାସେ
ସୁଷମା ଲହରୀ ଖେଳେ ତୁଙ୍ଗ ନୀଳ ଶଇଳେ
ସୁବାସେ ଉଠଇ ସୁ-ତରଙ୍ଗ ।୨।

ବଙ୍ଗ ମହୋଦଧି ଧୋଇ ଦିଏ ଚରଣ
କେଦାର ପ୍ରଭାସତନୁ ଗୃରୁ ହେମ ବରଣ
ସିଞ୍ଚିତା ଶୀତଳ ନୀର ପାବନଧାରା
ପୁଣ୍ୟ ପ୍ରଭାବ ବିଭଙ୍ଗ ।୩।



## ॥ ୨୪ ॥

ସ୍ୱରଗ ଯିଏରେ ବେହେସ୍ତ ଯିଏରେ
ଦୁଇଟି ନାଆରେ ଗୋଟିଏ ଥାନ
ଗୀତା ଯା'ରେ କହେ ସରଗ ରାଇଜ
ବେହେସ୍ତ ତାକୁରେ କହେ କୋରାନ ॥ । ୦ ।

ସବୁଗୁଁ ଝରଇ ମମତା ଝରଣା
ବେହେସ୍ତେ ଗୁମୁରେ ପ୍ରୀତି ମଧୁବୀଣା
ରାମ ରହିମ୍ ବିଲାସ ଭୂଇଁ ସେ
ମମତା ଫୁଲର ଅଶୋକ ବନ । ୧ ।

ସନ୍ନ୍ୟାସୀର ସେତ ମୁକତି ପସରା
କାଜି ପାଇଁ ସେହୁ ଗୋଟିଏ ଆଶରା
ସବୁରି ପାଇଁ ସେ ଶାନ୍ତିର ଧାମ
ଭୁଲ ବୁଝେ ଖାଲି ଆମରି ମନ । ୨ ।

ବେହେସ୍ତ ପାଇଁକି କୋଟିଏ ସଲାମ
ସ୍ୱରଗର ଲାଗି ଲକ୍ଷେ ପ୍ରଣାମ
ଈଶ୍ୱର ଖୋଦା ନାହିଁ ଭେଦା ଭେଦ
ଯିଏ ହିନ୍ଦୁ ସିଏ ମୁସଲମାନ । ୩ ।



॥ ୨୭ ॥

ସୁତୁରି କରରୁ ଲିପି ପୋଛୁ ଅପା
ପକାଅ ଅରୁଆ ଝୁଟିଲେ,
କଳସ ବସାଇ ବଜାଶୁଭ ଶଙ୍ଖ
ଆଜି ଘରଘର ଛୁଟିଲେ ।୧।

ଆମ୍ବ ଅଁଏଲାର ଡାଳ ଟାଙ୍ଗିଦେଇ
ରମ୍ଭାତରୁ ଦେ'ପୋଢଲେ,
ଦୁଇଶ ବରଷ ପରେ ମୋ ଦେଶରେ
ହଟିଲ ଦୁଃଖ ବିପତ୍ତିଲେ ।୨।

ଅରକ୍ଷିତା ହୋଇ ମା' ବୁଲୁଥିଲା
ଆଜି ରାଜ ରାଜେଶ୍ୱରୀ ଲେ,
ବିଶ୍ୱ ଚମକାଇ ବାଜେ ବୀର ବାଜା
ବାଜେ ମଙ୍ଗଳ ମହୁରୀ ଲେ ।୩।

ତିନି ରଙ୍ଗେ ରଙ୍ଗା ଏଇ ଯେ ପତାକା
ଏହାକୁ ଟେକିବା ଲାଗିଲେ,
କେତେ ବୀର ପୁଏ ଗଲେ ବଇକୁଣ୍ଠେ
ତୁଳାର ମରମ ଦାଗିଲେ ।୪।

ସେହି ଶହୀଦଙ୍କ ରକତ ମଶାଲ
ଜାଳ ପ୍ରତି ଘରେ ଘରେ ଲେ,
ଦେଇ ଯା' ପ୍ରଣତି ଏହି ପତାକାକୁ
ଆଦରେ ପୀରତି ଭରିଲେ ।୫।

●

॥ ୨୭ ॥

ଓହେ ଜନମଭୂମି ଭାରତବର୍ଷ
ଗୌରବେ ଗରୀୟାନ
ତବସେବା ବ୍ରତ ନିତ୍ୟ ନିଯୁକ୍ତ
ଯେତେଦିନ ଥିବ ପ୍ରାଣ । ୦ ।

ବାରବାର ମୁହିଁ କରେ ଶପଥ
ସାଧିବି ନୀରବେ ସେବା କରମ
ମୋ'ର ବୋଲି ଯାହା ଦେଇ ତବପଦେ
କରିବି ଜୀବନ ଦାନ । ୧ ।

ତୁମରି ପୂଜାରେ ଝାନ୍‌ସୀ ଭୋନ୍‌ସଲା
ପେଶବା, ତାନ୍ତିଆ, ଅଢରଓ୍ୱାଲି
ଅରପିଲେ ପ୍ରାଣ ସିରାଜଉଦ୍ଦୌଲା
ଅଲ୍ଲୀ ଟିପୁସୁଲତାନ । ୨ ।

ତବ ସେବା ଲାଗି ଜାତିର ପିତାଜୀ
ଆଜାଦ୍ ଫଉଜ ଶୀର୍ଷେ ନେତାଜୀ
ଯାହାଙ୍କ ନାମରେ ଇତିହାସ ଆଜି
ଗାଏ ଗଉରବ ଗାନ । ୩ ।

॥ ୧ ॥

ଆଖି ମୋର ଦେଖିଛୁ ଥରେ ସେ ଶ୍ୟାମ ରୂପ
କାନ୍ତ ସିନ୍ଧୁ ଖଁରେ କଳା ମାଣିକ
ମୂରଲୀ ଅଧ ଅଧରେ ।୦।

ଡାଳିମ୍ବ ମଞ୍ଜି ପରି ଦଶନ ଶିଗ୍ଧ
ସୁହାସ ମାଣିକ ଝରେ
ନନ୍ଦ ନିଳୟ ଚନ୍ଦ୍ର ତୋଳା ପ୍ରତିମା
ମୋହିଲେ ପ୍ରୀତି ମନ୍ତ୍ରେ ।୧।

ନୂଆ ନିଆଳୀ ଚୂଡ଼ା ଲେଞ୍ଜଣି ଯୋଡ଼ା
ସୁବର୍ଣ୍ଣ ନୟନେ ହରେ
କେଳି କୋକିଳ ହେଲା ଭବ ଚଂଚଳ
ଗାଇଲା ପଞ୍ଚମ ସ୍ୱରେ ।୨।

ମଧୁବନ ବଧୂ ସେ ଶ୍ୟାମ ସୁନ୍ଦର
ତା' ଲାଗି ରାଧିକା ଝୁରେ
କେଶବ କବି କରେ ବନ୍ଦନା
କରୁଣ ବିରହ ସୁରେ ।୩।

## ॥ ୨ ॥

ଏକି ନାଟ ଲଗାଇଛୁ କଳା କହ୍ନାଇ
ଭବ ହାଟକୁ ବାଟ ଦେ ଚହ୍ଲାଇ ।୦।

ପେଟ ଚଳିବା ପାଇଁ ସଉଦା ଘରେ ନାହିଁ
ଯା'ଥିଲା ପୁଂଜି ପଟା ଗଲାଣି ଶେଷ ହୋଇ
ତଣ୍ଟି ମୋ ଅଠା ଅଠା ନାମ ପାରୁନି ଗାଇ
ପିଠି ଯାଇଛୁ ଫାଟି କୋରଡ଼ା ଗୁଟ ଖାଇ
ଅଣ୍ଟି ଧରିବ ଅଣ୍ଟାରେ ଧନ କାହିଁ ।୧।

(ମୋର) କୁମଣ୍ଡ ଭୁଆସୁଣୀ ଝଣ୍ଡ ମାରେ ଗୁଅଣି
(ତା'ର) କାମନା ସଉତୁଣୀ ପିଏ ରକତ ଚୁଣି
ମୋତେ ଭକୁଆ ଦେଖି ଦେଲୁ ଭଣ୍ଡାଇ ।୨।

ମୋର ହିସାବ ଖାତା ଦେଖ
ପାପର ନାହିଁ ମାପ
ଜୀବନ ଅଭିଶାପ-କରୁଛି ଅନୁତାପ
କାହିଁକି ଆସିଥିଲି କି କରମ ମୁଁ କଲି
ପାଦ ଗଲାଣି ଥକି-ଆଉ ପାରୁନି ଚଲି
ଘର ଜଂଜାଳ ଆଉ ପାରୁନି ସହି ।୩।



।। ୩ ।।

କାହିଁ ଆସିଥିଲୁ ମନ ଯାଉ କେଣିକି, ମନରେ
ବାଟ ହୁଡ଼ିଲୁ ଗୁଆଁର ଜାଣି ଜାଣିକି । ୦ ।

(ଗୃହିଁ) ଅନ୍ଧାର ଆସିଛି ମାଡ଼ି ବଢ଼ିଛି ନଈ, ମନରେ
ତର ପାର ହେବୁ ବାବୁ କଉଡ଼ି କାହିଁ ।
ଗୃହିଁ ବାଉଳା ମନ, ନାଚେ କାଳ ତୋଫାନ
ଲେଟେ ଗନ୍ଧନ ବନ, କୁହାଟ ଛୁଟେ ଯମ,
ଭୁଲିଲୁ ବେଦ ପୁରାଣ—ସାର ବାଣୀକି । ୧ ।

ଯଉବନ ବଣ ତୋତେ ଦେଇଛି ଜାଳି (ମନରେ)
କମର ବାଙ୍କିଲା ଏବେ ଜରାର ପାଳି
ଭବ ହାଟ କୁଣିଆଁ ବଡ଼ ତୁ ଅମାନଆଁ
ଲାଗିଲା ସୁଆଦଆ, ଗିଳିଲୁ ମୁଣ୍ଡା କଆଁ
ରୁକ୍ଷ ମଜାସିଲୁ, ସୁନା ଫିଙ୍ଗି ପାଣିକି । ୨ ।

(ଏବେ) କଫ ବାତ ସନ୍ନିପାତ ଗଲଣି ଘୋଟି,
ଲଂପୁଛି ହାତ ପାଦ ଥରୁଛି ପାଟି
ଆଉକି ଅଛି ବେଳ କରିବାକୁ କଟାଳ
କାଳ ଧରୁଛି ବାଳ (ତୁ') ଧର ଭଜନା ମାଳ
ଭଜ ଗୁରୁ ଗୋବିନ୍ଦ ଚନ୍ଦ୍ରାମଣିକି । ୩ ।

୬

## ॥ ୪ ॥

କହ୍ନୁ କଳାମୁହାଁ ଜଗା ଠାକୁର
କିଆଁ କଳିଯୁଗେ ହେଲ ପଥର
ପ୍ରଭୁ ଦେଉଳରେ ଥାଇ ହସୁଛ
ଏଣେ କାନ୍ଦୁଛନ୍ତି ଦୁଃଖୀ ଆତୁର ।୧।

ତୁମେ ଛପନ ମଣୋହିଁ ଗିଳୁଛ
ଦେଖ ଉପବାସୀ କେତେ ଜନତା
ଏକ ଅବସ୍ଥର ତୁମେ କରୁଛ
ନକେ ହୋଇଣ ଜଗତ କରତା
ତୁମେ ଶୋଇ ପଡ଼ିଛକି ନଦରେ
ଟାଣ ପାଷାଣ ହେଲକି ଅନ୍ତର ।୨।

ତୁମ୍ଭ ସାନ ବଡ଼ ଭେଦ ବସ୍ତ୍ରରେ
ଜଳିଯାଏ ତୁମ ସୃଷ୍ଟି ଜଗତ
ହିଂସା ଅସ୍ପୃଶ୍ୟା ଡାଆଁଣୀ ଡେଉଁଛି
ମାଗେ ତତଲ ତଟକା ରକତ
ଉଠ ବଳିଆର ଭୁଜ କାଳିଆ
ଜାଣ ଜଗତ ହେଲାଣି କାତର ।୩।



॥ ୫ ॥

ଟୋପା ଟୋପା ଲୁଣି ଲୁହ, ଟପ ଟପ ଝରଇ
ନାଚ, ନାଚ ହରିନାମ ଗାଆରେ
ଅନ୍ତରେ ସେ ଅଛି, ନାହିଁ ବାହାରେ ।୦।

ହସି ହସି ଶଶୀ ଆସେ ନାଲି ନାଲି ସୂରୁଜ
ସେରୂପ ସ୍ୱରୂପ ଥରେ ଚାହାଁରେ
କୁହୁ କୁହୁ ପିକ ଡାକେ, ସନ ସନ ପବନ
ମନ୍ଦ ମନ୍ଦ ଫୁଲ ବାସେ, ଭରା ଭରା ଗଗନ
ଚିତ୍ତେ ଚିନ୍ତ ଚିନ୍ତାମଣି, ଚିଦାନନ୍ଦ ଚିନ୍ମୟ
ନିତ ନିତ୍ୟାନନ୍ଦଧାମେ ଯାଅରେ ।୧।

ଧନ ଜନ ସନମାନ, ମନେ ଥାନ ନଦେବୁ
ପରବ ଘଟେ ପ୍ରକଟ, ସେ ମୂରତି ଦେଖିବୁ
ଭକତି ଆରତି ପୂଜା, ଆରାଧନା କରିବୁ
ଭାସି ଯିବୁ ମୁକତିର ନାଆରେ ।୨।



## ॥ ୭ ॥

ତନୁ ମୋର ଦେଉଳ କର
ମିଛେ ଉଜାଗର ଜଣି ଦିବସ
ନୟନ ଦୀପାଳି ଜଳେ ଦିବାରାତ୍ର ମୋର୍
ମରମ କୁସୁମ ରହିଛୁ ଫୁଟି
(ତା'ର) ସୁବାସ କାନ୍ଦେ ତବ ପୀରତି ଲାଗି
ଆସ ପ୍ରଭୁ ହୃଦୟରେ ବସ ।୦।

ତବ ଚିର ବିଚ୍ଛେଦ ହୋମ ଶିଖୀ ଜଳାଇ ।
ସେତ ମୋର ଅନ୍ତର ଦହଇ ।
ନୀଳ ଘନ ସମ ବରଷି ନୀର
ଢାଳି ଦିଅ ଶୁଭ ଆଶିଷ ।୧।

ଏକ ଅବହେଳା ତୁମେ କଲ ନିଦାରୁଣ
କେବେ ଜାଗିବ ନଭେ ସୁଖର ଅରୁଣ
ହେ ବିଶ୍ୱପ୍ରାଣ ଦେଖାଦିଅ ବାରେ
ଆନନ୍ଦ ଧାର ବରଷ ।୨।



## ॥ ୭ ॥

ଦୀନବନ୍ଧୁ ଥାଉଁ ଥାଉଁ ବନ୍ଧୁ ଖୋଜ୍ କାହିଁକି
ନିରୋଧ ମନ ପବନ ଭବରୋଗ ପାଇଁକି । ୦ ।

ପ୍ରତ୍ୟାହାର ପ୍ରାଣାୟାମ, ଆସନ ଧାରଣ ଧ୍ୟାନ
ଅସୂୟା ଶୋଚନା ଯାଉ, ହରିନାମ ଗାଇକି ୧।
ମୁଦିତା ବରଜି ମନ, ନିତ୍ୟକର ଦରଶନ
କାଳ ଘଉଡ଼ିବୁ, ଡ଼ାକ ଜଗତର ସାଇଁକି । ୨ ।

ପର ରଜ ଶଶବଦ, ଅବନା ଗାୟତ୍ରୀ ପଦ
ସୁମନ କୁମନ ତେଜ, ସେ ଚରଣ ଗୁହିଁକି । ୩ ।



॥ ୮ ॥

ଜନମେ ସଂସାର ପଥ, ଅତି ଅଜଣା,
ମନରେ ଅତି ଅଜଣା
ବାଟ ହୁଡ଼ିଲେ ବାଟୋଇ ହୋଇବୁ ବଣା ।୦।

ଥରେ ଭୁଲି ପୁଣି ଗଲୁ ମା' ଗରଭେ
ନହେଜିଲୁ ଗୁରୁ ବାଣୀ ମନ୍ତ୍ର ଗରବେ
ଦଶମାସ ଦଶଦିନ ଗରଭେ ଥାଇ
ରକତ ପୁରୁଷ ପୁରେ ରହିଲୁ ଯାଇ
କିଏ ତୁ କେଉଁଠି ଅଛୁ ନହେଲା ଜଣା ।୧।

ଭୂଇଁ ଛୁଇଁ କୁଆଁ କୁଆଁ ରାହା ଧରିଲୁ
କୁଆଁ କୁଆଁ ନୁହେଁ କାହିଁ କାହିଁ ବୋଇଲୁ
ମାୟା ଘେରି ମା' ମାଟି ପରଶ ପାଇ
ଆର ପାରି କଥା ମନେ ରହିଲା ନାହିଁ
ଜ୍ଞାନ ନେତ୍ର ଖୋଲି ଥରେ ଦୂରକୁ ଅନା ।୨।

ଭାଂଗ ପିଇ ଭାଙ୍ଗିଦେ'ତୁ ଭବ ବନ୍ଧନ
ଏଧୂଳି ଧରଣୀ ହେବ ନନ୍ଦନ ବନ
ଶଂକର ଚିର କିଂକର ଭକତ ପାଶେ
ଭକତି ଥିଲେ ଶକତି ହୃଦୟେ ଆସେ
ସେ ମିଠା ଚାଖିଲେ ବାବୁ ଲାଗେ ଅଲଣା ।୩।

ମମତାର କଞ୍ଚା ସୁନା ମାୟା କଣ୍ଢେଇ
କେହି ନପାରିବେ ସ୍ନେହ ଡୋ଼ର ଛଡ଼ାଇ
ଶିଶୁରୂପେ ଖେଳେ ଜଗତ ଶିବ ସୁନ୍ଦର
ବାନ୍ଧିଛି ଯମ ସେଟାକୁ କରି ସୁନ୍ଦର
ଆଖି ଆଗେ ଅଛି ତୋର ନହୁଏ ଜଣା ।୪।

ଶିବ ତୁ ଅଶିବ ନୋହୁ ଶିବ ଭକତ
ରକତ ମାଉଁସ ତୋର ସାଧନା ପୂତ
ଦୀପପରି ଜଳେ ଜଳ ଦେଲୁ ଆଲୋକ
ତୋ ଲାଗି ରହୁଛି ମୁକ୍ତ ସପତ ଲୋକ
ସକଳ ସଂସାର ହାଟ ଘର କରଣା
କାଟିଲୁ ମାୟା କୁହୁଡ଼ି ନହୋଇ ବଣା
ବାଟ ହୁଡ଼ିଲେ ବାଟୋଇ ହୋଇବୁ ବଣା ।୫।



॥ ୯ ॥

ଜଟରେଖ ନିସ୍ତାରଣ ହରିହେ
ନିଖିଳ ନିକେତନ ହରିହେ
ଝଲନ୍ତୁ ଏ ବଚନ, ନବ ପଞ୍ଚ ଭୁବନ
ଭବ ସାଗର କର ପାରିହେ ।୦।

ମୁଁ ଗ୍ରୁର ପରସ୍ୱର ଚୋର
ନିପୀଡ଼ି' ସଂକଟୁ ଆତୁର
ନୀଳ ଶୈଳନାଥ, ଜଗତ ଜନ ତାତ
ଅରତ ଉଦ୍ଧାରଣକାରିହେ ।୧।

ଭୁବ ଭାର ହରଣ ପାଇଁକି
ଆଉ ହରି ଆସିବେ ନାହିଁ କି
ପ୍ରମୋଦ ବିଧାୟକ, ତ୍ରିଭୁବନ ନାୟକ
ପାତକ ନାଶି ବାନା ଧ୍ୟାୟି ହେ ।୨।



## ॥ ୧୦ ॥

ପଥର ଠାକୁର କୁହ
ଦେଉଳରୁ ଥାଇ କୁହ
କୁହ କଲାମୁହିଁ ମିଠା ଲାଗିଲାକି
ଗରିବର ଲୁଣି ଲୁହ ।୦।

ହସ ପେଡ଼ିରେକି ଡାକ୍ରୁଣୀ ରଖିଛ
କୋଲପ ଦେଇଛ ମୁଦ
ଦୁଃଖର ଅମାର ରହିଛି ମୁକୁଳା
ମଣିଷ ମରୁଛି କଂାଦ
ପହଁରିବା ଆସ ତୁମ ଦୁନିଆଁରେ
ଛୁଟିଛି ରକତ ସୁଅ ।୧।

କଥା କହିବନି ହସୁଥିବ ନିତି
ରତନ ବେଦୀରୁ ଥାଇ
ଶୁଖିଗଲା ଏବେ ଦୟାର ସାଗର
ଗରିବ ଦୁଃଖୀଙ୍କ ପାଇଁ
ତୁମେ ବଡ଼ ବୋଲି
ବଡ଼ଲୋକେ ସତେ
ହେଲେ ତୁମ ଗୋଲାପୁଅ ।୨।

## ॥ ୧୧ ॥

ପାହିଲା ଅମାନିଶା ଅଇଲେ ଶୁଭ ଉଷା ମଙ୍ଗଳ ଗୀତ ଗାଏ ଭାଟ
କୁମ୍ଭାଟୁଆ କୁକ୍‌କୁଟ ବନେ ବନ ବଞ୍ଜଟ କରନ୍ତି ତବ ସ୍ତବ ପାଠ ।
ମହାପ୍ରଭୁ ! ନିଦା ନିପଟ କଳା କାଠ, ପହଡ଼ ଭାଙ୍ଗ ବିଶ୍ୱନାଟ
କମଳ ମୋଦ ଖୋଲେ ଅରୁଣ ଦାଗ ଭାଲେ ବସିବ ପୁଣି ଭବହାଟ ।୧।

ଦେଉଳ ପାଶେ ଫୁଟି ସୁମନ ନାନା ଜାତି ସୁବାସେ ଭରଦେ ଅଙ୍ଗନ
ପଞ୍ଜରେ ଉଠେ ଥର ଶୋକ ତାପ ଆହର ମହାସ୍ନାନ ଦାନ
ମହାପ୍ରଭୁ ! ନିସ୍ୱନା ପଣେ କାନ୍ଧେ ବସି ବାନ୍ଧିଛ ମାୟା ଡୋର ପାଶୀ
ପ୍ରାତେ ଯେବେ ପ୍ରଣତ ଧୂପ ଦୀପ ଆରତି ଅନ୍ତର ପାତକ ବିନାଶି ହେ ।୨।

ତବ ପରଶ ପାଇ ଧରଣୀ ଥିଲା ଶୋଇ ଶାନ୍ତ ଦାମିନୀ ନିଦ୍ରାକୋଳେ
ନିଖିଳ ବ୍ୟଥା ହରି ନିଜ ଅଙ୍ଗେ ଆହରି ଶ୍ରୀହରି ହରି ନେଲ ବଳେହେ
ମହାପ୍ରଭୁ ! ଜାଗେହ ଜାଗରଣ ନାଥ, ପାଦଛ ତଳେ ଡାକେ ଆର୍ତ୍ତି
ନଜାଣେ ପ୍ରାତଃ କୃତ୍ୟ ଯୋଡ଼ି ଯୁଗଳ ହସ୍ତ ଡାକୁଛୁ ଅଶରଣ ଭୃତ୍ୟହେ ।୩।



॥ ୧୨ ॥

ପ୍ରଥମ ପ୍ରଣବ ନାଦ ଓଁକାର,
ଶୁଭ୍ରମୁଜ୍ଜ୍ୱଳ, ଶୁଭ ମଙ୍ଗଳ
ଜ୍ୟୋତି ଆଧାର ।୦।

ସ୍ୱୟମ୍ଭୁ ନମୋ, ପୁରୁଷ ଉତ୍ତମ, ବିଶ୍ୱ ଈଶ୍ୱର—
ଦୀପ୍ତ ଉଦାର, ବେଦ ବଂଦିତ, ଶୁଭ୍ର ସାକାର ।୧।

ସତ୍ୟ କେତନ ନିତ୍ୟ ପ୍ରସନ୍ନ, ଦୁର୍ଗତି ହର
ବିଶ୍ୱ ନିୟନ୍ତା, ତୃଣ କର୍ତ୍ତା, କଲ୍ୟାଣ କର ।୨।

ଚିନ୍ମୟ ଈଶ, ଜ୍ୟୋତି ପ୍ରକାଶ, ଚିର ସୁନ୍ଦର
ସଜ୍ଜନ ଜନ, ରଂଜନ ବନ୍ଦେ, କଞ୍ଜ ପଦ୍ମର ।୩।



|| ୧୩ ||

ବଡ଼ ଠାକୁର ଠକାଇ ଦେଲ
ଦୁଃଖ ଦରିଆରେ ସୁଖବୋଲି ଯାହା ଦେଇଥିଲ ହରିନେଲ । ୦ ।

ଗୁଳଘର ଖଣ୍ଡେ ତୋଳିଥିଲି ପ୍ରଭୁ ଜାଳିଲି ବଜର ମାରି
ଫୁଲ ଗଛରେ ମୋ ଫଳ ଧରିଥିଲା କରତରେ ଦେଲ ଚିରି
ଆତୁରେ ବାହୁନ ଡାକଲେ ଆତୁର ତୁମେକି ମଣୁଛ ଖେଳ । ୧ ।

(ମୋ) ବର୍ତ୍ତିକ ନଉକା ଫେରିଲା ବେଳକୁ ପଠାଇ ଦେଲ ତୋଫାନ
ସମ୍ମାନ ମାଗିଲି ମାନ ଉଦ୍ଧାରଣ ଦେଲ ଘୋର ଅପମାନ
ଜଗତ କହୁଛୁ ବଡଦାତା ବୋଲି ମୋଲାଗି କଠୁର ହେଲ । ୨ ।



## ॥ ୧୪ ॥

ଭଲ ଲାଗେ ମୋତେ ଭଲଲାଗେ ହରିନାମ...
ଅସିତ ଆକାଶେ, ଅସୀମ ବିକାଶ
ନବ ଦୂର୍ବାଦଳ ଶ୍ୟାମ ।୦।

ବନ୍ଧୁଲି ଅଧର ମାଧୁରୀ ମଧୁର
ସୁନ୍ଦର ମୋର ହରି...
ନବ ମୁଞ୍ଜରିତ ଅଳି ଗୁଞ୍ଜରିତ
ସଜ ନୀଳୋତ୍ପଳ ପରି ।
ଚନ୍ଦ୍ରରୁ ନିଗୁଡ଼ି ସୁଧା କେ ବୋଳିଛି
କୋମଳ ତମାଳ ବାମ ।୧।

ମୁରଲୀ ଯନ୍ତ୍ର କରିଛି ମନ୍ତ୍ର,
ଅନ୍ତରେ ବାଜେ ମୋର,
ସଦୟ ହୃଦୟ ମଞ୍ଜୁଳ ଠାକୁର
ଉଦୟୁକ ଶଶଧର,
ସଚଳ ଜଳଦେ ଚପଳାର ଲୀଳା
ମନ୍ଦହାସ ମଧୁଠାମ ।୨।



|| ୧୪ ||

ଭୁଲି ଗଲୁ ମନୁଆଁରେ ଛୁଇଁ "ଭବ ଭୂଇଁ"
କିଏ ତୋତେ ପଠାଇଲା ଆସିଛୁତୁ କାହିଁ
ମୋର ମୋର ବୋଲି ବୋଲୁ ଦୁନିଆଁରେ ସବୁ
ନାଳ ନେବ ବାଳ ଧରି କାନ୍ଦ କାନ୍ଦ ଯିବୁ
ଭୁଲି ମନରେ
ଗଣ୍ଠି ଧନ ତୋର ସାଥରେ । ୦ ।

ଧୂଳି ଖେଳେ ମାତ ତୋର ଗଲା ବାଳ କାଳ
ଯଉବନେ କାମିନୀ କାଞ୍ଚନ ହେଲେ କାଳ
ବାଇଆ ହାଣ୍ଡି ତୁ ବୋଲୁ ସଂସାର ଗହନେ
ଗୁଆଁର ଗରବ ଭାଙ୍ଗି ଯମ ନେବ ଦିନେ
ମନ ବାଇଆରେ
ବାଉଳା ତୁ ରୂପ ନିଶା ପିଇରେ । ୨ ।

ବାହାରେ ମହାକାଳର ରୂପ ଚହଟୁଛି
ଜରା ମୃତ୍ୟୁ ବ୍ୟାଧି ନେଇ ଚମଡ଼ା ଢାଙ୍କିଛି
ଏକା ଆସିଥିଲୁ ବାବୁ ଏକା ଯିବୁ ଫେରି
ପଡ଼ିଥିବ ମଡ଼ା ଶବ କାନ୍ଦୁଥିବେ ଘେରି
ଗଲେ ମରିରେ
ଶବ ବୋଲି ନଛୁଇଁବେ ଡରିରେ
ମନ ବାଇରେ । ୩ ।



## ॥ ୧୭ ॥

ଭୁଆଁ ବୁଲ ପଥେ ବୁଲୁ ଅନ୍ଧାର ଜଣା
ଘେନିଲ ମାୟା କୁହୁଡ଼ି ହୋଇଲୁ ବଣା ।୦।

କିଏ ତୁ କାହୁଁ ଆସିଛୁ କାହିଁକି ଯିବୁ
ମୋର ମୋର କହି ବୋଲୁ କଧନ ନେବୁ
ମଣି ମାଣିକ ଯତନେ ଯେତେ ରଖିଛୁ
ଲୋକ ରଂକ ଗୁଆଁରରେ ନଡ ଦେଖିଛୁ
ଅମୃତ ମଣି ପିଇଲୁ ଗରଳ ପଣା ।୧।

ଆଖି ବୁଜିଲେ ଅନ୍ଧାର, ନଥିବେ କେହି
ମଡ଼ା ବୋଲି ନାକ ଟେକି ଛୁଇଁବେ ନାହିଁ ।
ଗାଁ ପାର ହେଲେ ତୋର ନାଁ ଲୁଚିବ
ଗଂଗାନାରାୟଣ ହରିନାମ ଶୁଭିବ
ମାଟିରେ ତୁ ମିଶି ଯିବୁ ମାଟି ଖେଳନା ।୨।

ବନ୍ଦୀ ହୋଇ କେତେ କାଳ କାନ୍ଦିବୁ ଆଉ
ସାଧନା ନ କରି ସିଦ୍ଧି ପାଇବୁ କାହୁଁ
ଆତ୍ମାକୁ ଚିହ୍ନିଲେ ପରମାତ୍ମା ପାଇବୁ
ଭବ ବନ୍ଧନ ଛନ୍ଦନ ପରି ମଣିବୁ
ଶୁଭିବ ନବୀନ ସ୍ୱରେ ସରଗ ବୀଣା ।୩।



## ।। ୧୭ ।।

ମହା ବ୍ୟୋମର ଜ୍ୟୋତିଷ୍କ ପୁଞ୍ଜ
ନୀହାରିକାର ଦେଶ ।
ହେ ମହାପ୍ରଭୁ, ପ୍ରାରମ୍ଭ କାହିଁ
କେଉଁଠି ତୁମ ଶେଷ ।୦।

ହେ କୋଟି ବିଶ୍ୱର ଧାତା
ଅନନ୍ତ ତୁମ ନିୟମ ତନ୍ତ୍ର
ମହା ବିସ୍ମୟ ସ୍ରଷ୍ଟା ।୧।

ନୀଳ ଜଳଧି ଚର ଚଞ୍ଚଳ ବ୍ୟାପ୍ତ ଚରାଚର
ରୌପ୍ୟ କିରୀଟୀ ଶୈଳ ଶିଖର ମଣ୍ଡିତ ଧରାଧର
ହେ ବିଶ୍ୱ ନିୟନ୍ତା ସାଇଁ
ଧ୍ୟାନ ଅତୀତ, ଜ୍ଞାନ, ବିଜ୍ଞାନ
ଆତ୍ମାର ଆତ୍ମା ତୁହି ।୨।

ଆନନ୍ଦ, ଘନ, ସତ୍ୟ, ସୁନ୍ଦର, ଚିନ୍ମୟ ବିଶ୍ୱମ୍ଭର
ଇନ୍ଦ୍ରିୟାତୀତ ଚେତନା ଚିତ୍ତ
ସୂକ୍ଷ୍ମରୁ ସୂକ୍ଷ୍ମ ତର
(ମୁଁ) ପ୍ରଣମେ ବାରମ୍ବାର
ଅନ୍ଧ ନୟନୁ ବନ୍ଧ ତମସା
କରହେ ପ୍ରଭୁ ଦୂର ।୩।

## ॥ ୧୮ ॥

ଶିଙ୍ଗା ଶଂଖ ଘଣ୍ଟାଭେରୀ ବାଜେ ହେ
ମୋ ଜଗା ଜାଗ ଜାଗ
ଶ୍ରୀମୁଖ ପଖାଳ ବେଗ ବେଗ ହେ । ୦ ।

ପରିଚ୍ଛା ପର କରଣ— ଉଭା ଧରି ଦରପଣ
ପହୁଡ଼ ଭାଙ୍ଗ କାଳିଆ ନିଶି ହେଲା ଅବସାନ
ଗିଲବ ପରି ଛଅନ ଭୋଗ ହେ, ବଡ଼ଖିଆ । ୧ ।

ସୁନାର ବଇଠା ଜାଳି-ବସିଛୁ ବୁଢ଼ା ସିଙ୍ଗାସ୍ରି
ମହିମା ମଣିମା ନାଦେ ପଡୁଛୁ ବେଢ଼ା ଉଚ୍ଛୁଳି
ପଞ୍ଚ ଉପଚୃର ବଡ଼ ବାଗ ହେ ଜଗନ୍ନାଥ । ୨ ।

ଗମ୍ଭୀରି ଧୂଆ ପଖାଳ ସିଙ୍ଗାର ଭୋଗ ଶୀତଳ
ପୁରି ପିଠା ଝଖିରସ ପୁଣି ପଇଡ଼ ଶାକର
ଗୌରୀ ପାକ ବଥୁଆ ଶାଗ ହେ ସୁଖ ବାରେ । ୩ ।

ଟେଗହେଲଇ ପାନ ଭହୁଣୀ ବଳିଆ ତ ଗୁଣମଣି
ନିଦକା ନିଦରେ ଶୋଇ ପାରୁନାହିଁ କିଛି ଜାଣି
ମରତେ ଜଲେ ମରଣ ଜାଗହେ ଜଗନ୍ନାଥ । ୪ ।



॥ ୧ ॥

ଆ ଗୁଣ୍ଡୁଚି ମୂଷାରେ.........ଆ ଗୁଣ୍ଡୁଚି ମୂଷା
ନାକର ଖାଇ ବଞ୍ଚିଛୁ ଦୁବ କରବୁ ଯେବେ ବସା ।୦।

ଝରଣା କଡ଼ ମାନ୍ଦାର ପାଖେ ମିରିଗ ପିଏ ପାଣି
ଗନ୍ଧର ବଳେ କାଣ୍ଡି ବଗକୁ ଖୁମ୍ପୁଛି ରାଜବଣି
ଢେଙ୍ଗା ଗୋଡ଼ରେ ଫିକା ଅଳତା ନାଇଛି ବେଙ୍ଗୁଲି ନାନୀ
ବା' ହବକ ଶଙ୍ଖଚିଲଟା ଝାଉଁଛି ଫେରକାନ୍ଧ
ଆ' ମୋ ସାଙ୍ଗ ସୁନା ଭାଇଟା ମାଆନ ମୋର ପୋଷା ।୧।

ପଖାଳ ସଙ୍ଗେ ଜହ୍ନି ରାଇତା, ଏକାଠି ଦୁହେଁ ଖାଇ
ବୁଦା ସନ୍ଧିରୁ କୁଳୁ କୁଳିଆ ଚଢେଇ ଛୁଆ ଧରି
ପାଦରେ ତାର କୋଇଲି ସୂତା ବାନ୍ଧିବା ଟାଣ କରି
(ଆମ) ମଙ୍ଗୁଳି ଗାଈ କ୍ଷୀର ଦେଉଛି ପିଇବା କଂସା କଂସା ।୨।



॥ ୨ ॥

ଆରେ ଫେରିଆ ଆରେ ଫେରିଆ
ବୁଲୁଛୁ କଆଁ ବଣା ବାଟୋଇ ଆ'ରେ ଫେରିଆ ।୦।

ଗାଁ ବିଲର ମେଘ ମହ୍ଲାର
ଆଖୁ କିଆରି ଗୁହଇ
ସଜଳ ମେଘ ମଇଳା ଖରା
ତୋତେ କି ଡ଼ାକୁ ନାହିଁ
ଅଳପ ଦିଶେ ଅନ୍ଧାର ମିଶେ
ପାହାଡ଼ ତଳେ ଗାଁ ।୧।

କଳମ ଫୁଲ ନନ୍ଦଠରେ ଶୁଏ
ନରମ ସଞ୍ଜ ଆସେ
ଭଙ୍ଗା କମଳା ସବୁଜ ଘାସେ
ଶିଶିର ବିନ୍ଦୁ ହସେ
ପକ୍ଷୀ ଜନନୀ ଅଧାର ଦିଏ
ଶାବକ କରେ ଆଁ ।୨।



॥ ୩ ॥

ଏଇ ଘାଟ ଆର ପାରି...
ବଣ ବୁଦା ହେଲେ ପାରି...
ନଈରେ ପଡ଼ିଛୁ ଗ୍ରେଟ ନାଆରେ
ତହିଁ ମୋର ମାମୁଁ ଘର ଗାଁରେ
ଦ-ଦ-ପତୁରିଆ ଧାନ
ମିଶି ମିଶି କଲା ଦଣେ
ଝଡ଼େ ଆମ୍ଭ ହେଲେ ଝଡ଼ ବାଆରେ ।୧।

ଘଡ଼ିଆଲ ଖବ୍ର ଖାଏ
ହାଉ ଯାଉ କୁମ୍ଭୀର
ଅଙ୍କା ବଙ୍କା ସରୁ ନଈ ଗଣ୍ଡ ଭରି ଗମ୍ଭୀର
ଠାକୁରାଣୀ ଥାନେ ତହିଁ
ମଗର ମୁହିଁ ସିମେଇ
ଅଛନ୍ତି କାଲି କାଇ ମା'ରେ ।୨।

ଦ ପାଖରେ ଦାଣ୍ଡ ଘର
ଗାଁ ଭରି ସୁନ୍ଦର
ଅଖଲ ମଖଲ ମନ (ମୋ) ମାମୁଁ ସାନପୁଅର
କଥା ପେଁକାଲି ଧରି
ଆମ୍ଭ ଠାକୁରର ଭୁସି
ବଜାଏ ସେ ରଗେ ଆଈ ମାଆରେ ।୨।

କୁଲଖିଆ ମହାଜନ
ମୂଳ ମାପେ ପଧାନ
ପାନ ଖିଆ ସରଦାର୍ (ତା) ଗହଣୀ ଭରି ସାନ
ତେଲ ବନେ ଇଲବିଲ
ଦେହେ ପଡ଼େ ଖଡ଼ିଗାର
ଗରବ ତାହାର ମୂଳିଆରେ ।୩।

ବନରେ ମିରଗ ପକ୍ଷୀ
ଖାଏ ଫଳ ଫସଲ
ଦୂରେ ଅଛୁ ପାହାଡ଼ର ଗାଁ ପାଖେ ଜଙ୍ଗଲ
ନତ ମୁଁ ଭକତ ଭରେ
ଦୂରରୁ ପ୍ରଣତି କରେ
ଯେଉଁଠି ଜନମ ମୋର ମା'ରେ । ।୪।



॥ ୪ ॥

ଏଇ ମୋ ପଲ୍ଲୀ ଗାଁ ରେ ଗୁହ୍ନାଁ
ଏଇ ମୋ ପଲ୍ଲୀ ଗାଁ
ଧୂଳି ମଳର ମାଟିଘରଗ
ଏଇ ମୋ ପଲ୍ଲୀ ମା'ରେ ଗୁହାଁ ।୧।
ଯୋଡ଼ି ଯାଉଁଳ ଝାଂଦ୍ରୁଗ ବର
କଆ ଗୋହିର ପାଖେ
ତାଳ ନଡ଼ିଆ ବାହୁଙ୍ଗା ବାଙ୍କି
ଝୁଁଡ଼ି ପବନ ଡାକେ
ଦେଉଳେ କାନ୍ଦେ ଘୁମୁରି ପାଗ
ଯେଉଁଠି ପଡ଼େ ସକାଳ ଖରା
ଅଣ ଓସାର ଅରମା ବାଟ
ଡାକୁଛି ଫେରଆ ଆରେ ଗୁହାଁ ।୨।
ବାଉଁଶ ବଣେ ଡାହୁକ ଛୁଆ
ଗଳିକନ୍ଦି ରେ ଲୁଚେ
ଗହଳ ତୋଟା ଆମ୍ବ ପଣସ
ଅଦିନେ କେତେ ପାଚେ
ଦଳ ପୋଖରୀ ଗୋଳିଆ ଜଳ
ଗାଁ ପିଲ ମୋ ମଳି ମହଲ
ଦାନ୍ତ ନକୁଟା କୁଡ଼ିଆ ଘର
ଡାକୁଛି ଫେର ଗୁହାଁରେ ।୩।
ଗାଁ ସେ ପାଖ ନାଳି ସଡ଼କ
ବାଟୋଇ ହାଟେ ଗଲେ
ଶଡ଼କ ତଳେ ମାଳକ ମାଳ
ଆଳୁଅ ମାଳ ଝୁଲେ
ପଲ୍ଲୀ ମଧ୍ୟାନେ କୁହୁଡ଼ି ଚରେ
ଆଲୁଅ ଲଭେ ସବୁର ଘରେ
ଅଂଧାର ଗୁଢ଼ ନିଶା ଗରଜେ
କୁହାଟେ ଚଢ଼େଇଆରେ ଗୁହାଁ ।

●

|| ୫ ||

ଏବେ ଚାଲିଲେ ଝରଣା ପାଖେ
ଝୁମୁରୁ ଝୁମୁରୁ ପାଦେ
କୁଳୁ କୁଳୁଆ ପବନ ଝଟରେ ବହିଲା
ଧ୍ୱଶ ଛପିଲା ଟାଙ୍ଗର ପାରେ
ନାଲି ଗୁଲୁ ଗୁଲୁ ଛବି
ଝିଙ୍କ ଚଢେଇ କେନ୍ଦରା ସୁର ଧଇଲା ।୦।

ଯୋଡ଼ ଯାଉଁଳ ଧାଙ୍ଗିଡ଼ୀ ଗଲେ
ଝିଂପ୍ସା ବନ ସେପାରେ
ଉବୁରା ଭୂଇଁ ଝଲକ ବଳ
ଧାନ ପଚର ଡାକେରେ
ଗୁଉଁଷି କେଶ ମୁକୁଳା
ଯୁଆନ ମନ ଉଛୁଳା
ଆସ୍ତେ ବାଜେ ଘୁମୁରା
ବଇଁଶୀ ଗୀତ ଗାଇଲା ।୧।

ସରୁ କୁହୁଡ଼ି ଜଡିଲା ଲତା
ଜଳିଲା ସଞ୍ଜ ସଳିତା
ଦୂରୁ ଡାକିଲା ଝଢାର ଯା
ଆଚଲେ ରାଜ ଦୁହିତା
ସଜୁଆ ତାରା ହସିଲା
ବଣୁଆ ଫୁଲ ବାସିଲା
ମଂଗଳାଘରେ କଂସାଳ
ଶଂଖ ଘଣ୍ଟା ବାଜିଲା ।୨।

## ।। ୭ ।।

ଶୁଦ୍ଧ କୁନ୍ଦ ବଣ ଗୁଡ଼ା ନଈ କୂଳେ କୂଳେ
ଝୁମୁରୁ ଝୁମୁରୁ ପାଦେ ନୂଆବୋହୂ ଚାଲେରେ
କୂଳ ବୋହୂ ଚାଲେ ।୧।

କଇଁଚ ନଟୁଆ ତାଡ଼ ଫୁଲ ନାକ ଚଣା
ସଖୀ କଣ୍ଢେଇଟି ପରି ମାନଚ୍ଛ ଗହଣା, ମାନଚ୍ଛ ଗହଣା
ଆଡ଼ ପାଟେଜ ଅଳତା ବସନ୍ତେଇ ମଠା ଶାଢ଼ୀ
ଲୁଟିଯାଏ ତଟେଲରେ, କୂଳ ବୋହୂ ଚାଲେ ।୨।

ଖେଳେଣୀ ଶୁଆପରି ତା ଚୁମ୍ବା କଥା, ଚୁମ୍ବା କଥା
ଯୋରଷ୍ଟ ଫୁଲ ରଙ୍ଗ ନଇଁ ଚାଲେ ମଥା, ନଇଁ ଚାଲେ ମଥା
ବେଣୀ ବଣେ ପାଦ ମୁଦ୍ଧ ହଜେରେ
ନାଗେଶ୍ୱର ମୂଳେବସି ନାଗଗ୍ରିଟି ଖଟେଲରେ
କୂଳ ବୋହୂ ଚାଲେ ।୩।

ଗଡ଼ାଣି ଶଗଡ଼ ଗଡ଼େ ନଈ ତଡ଼ ଦେଇ, ନଈ ତଡ଼ ଦେଇ
ଚହକ ଗନ୍ଧ ଚମକ ବଙ୍କେଇ ଦାଏ ଗ୍ରୀବା, ବଙ୍କେଇ ଦାଏ ଗ୍ରୀବା
ଅଜାଣତେ ଚାରିଆଖି ମିଶେରେ, ଲାଜପାଇ ମାଛରଙ୍କା
ବୁଡ଼ିଯାଏ ଜଳେ ରେ, କୂଳ ବୋହୂ ଚାଲେ ।୪।



॥ ୭ ॥

କୋଇଲି ବେଙ୍ଗୁଲି-ଦ-ଭଉଣୀ ଲୋ—
ଆଗୁଲି ପଛୁଲି ଗୁଲେ—
ଶାଳ ବଣ ପାଖ ବଲେ
ଗୋଟିଏ ଡହିଁରୁ ଟୁସି କଲରା
(ଛା) ଖୋଷା ପାଟ ଫୁଲି ଝୁଲେ ।୧।

କୋଇଲି ବାନ୍ଧିଛି ରଙ୍ଗ ଖଡ଼ା ଗୋଛ
ଓଢଣା ନାକ ସରିକି
ବାଘ ବାଈଁ ରଚ୍ଛି ପିମ୍ପୁଡ଼ିଆ ବଟଣେ
ସାନଟି ଖିରି ଛନକା
ଝାଲିଆ ମୟୂରୀ ଝାଲର ଝୁଲାଇ
କୁନ୍ଥୁ କେକା ରବ ଦେଲେ ।୨।

ଲମ୍ବା ବରଗଛ ଓହ୍ଲାଳ ପାଖେ ଲୋ
ନେଉଳ ଗାଳୁଛି ମାଟି
ଏ କଥାଶ ପାଣି ସେ କଥାଶ ପାଣେ
କାଇଁଶ ପଡ଼ୁଛି ଲୋଟି
ଦନ ବୁଢ଼ା ଆସେ ଦଶହରା କନ୍ଧା
ବେଙ୍ଗୁଲି ତରକି ଗୁଲେ ।୩।

ମେଘ ବରଷୁଛି ଝଙ୍କର ଝାଇଁଲେ
ସୁନନ୍ଦା ଧରିଛି ଛୁଇଁ
ବାଘ ମହୁପୋକ ଗରଜନ୍ତି ବଣେ
ହମ୍ବାଲେ ଦୁହାଁଳୀ ଗାଈ
ଟିକା ଗୁଉଁରିଆ ବାଛୁରୀ ଗୁଲୁଛି
ବଗ ଗେଣ୍ଡାଳିଆ ଦଳେ ।୪।

ଅଳାପ ଢଙ୍ଗୀରେ ପାତେଲି କୋଇଲି
ଧାର ମୁହାଁ ଚଙ୍ଗ୍ ଚଙ୍ଗୀ ।
ତେଲ ହଳଦରେ ପଗ୍ରିଛି ଦେହ
ହଳି ଫୁଲ କରେ ଭଙ୍ଗୀ
ଟେଢେଇ ଟେରେଇ ଅନାଉଣୀ ଦେଖି
ଟେସ୍ରି କଣ୍ଠା ଫୁରି ମଲେ ।୫।



॥ ୮ ॥

ଓକୋଦାଲରେ କୋଡ଼ିଲକେ ସରଗର କଅଁଶ
ଅଧା ଧଳା ଅଧା କଳା ମେଘ କାଟେ ସିଆଣ୍ଠ
ଧନୁର ଫିକା କୁହୁଡ଼ି ମାଘମାସେ ବରଷା
ମାଘେ ମେଘ ଅଡମ୍ବର ବୃଷ୍ଟି କୁଳେ ଭରସା
ଆଷାଢ଼ୀ ଲଗାଣ ଝଣ ଶିରିବଣେ ଆତୁର ।୦।

ଆଶ୍ୱିନ ମେଘ ମଙ୍ଗଳ ଖେଦୁଅରେ ଡହକ
ଟିକର ସବୁଜ ଆଣେ ନୂଆ ଧାନ ମହକ
ଢରେଣ ଟି ଦନ ଥୋଡ଼ ଘୋଡ଼ା ମୁହାଁ ପଡର
ବାଂଶ ଦନ ଶିଁଷା ଟେକ ଝୁଲେ ଧାନ ଚଅଁର
କଟା ମଡ଼ା ତରତର ବୃଷୀ ଦଏ ଧାଉଁସା,
ହସେ ଧାନ କିଆର ।୧।

ମୂଳା ବୃଷ୍ଟ ତୁଳା ପର ଆଖି ବୁଲି ଧୂଳାରେ
ପାଖ ଜମି ଗାଁ ଗୋରୁ ମିଳେ ଶୁଭ ବେଳାରେ
ନ-ଦାନ୍ତ ଛ-ଦାନ୍ତ ସୁଲକ୍ଷଣା ବଳଦ
ଉଖିମୁଠି ଆଡ଼ମୁଠି ଚଉହତା ମରଦ
ବାପ ପୁଅ ଖଇ ଖଇ ଗୃଷ ଲାଗି ଚିଆର
ହସେ ଗୃଷ କିଆର ।୨।

ଦଶମାସ ବାଇଗଣ ଫଗୁଣରେ ପୋଟଳ
ସାତହାତେ ରମ୍ଭାରେଇ ନ କାଟିବ ପତର
ନଈକୂଳେ ସାରୁଫଳେ ସାରଦେଲେ ପାଉଁଶ
ଗୋବରରେ ଗୁଆଗଛ ଅଗାଡ଼ିରେ ବାଉଁଶ
ଆମ୍ବପର ଖମ୍ବଆଳୁ ଓଲ ଖୋଜେ ଗୁଲଇକ
ମୂଳ ବଢେ ଦୋହଗ ।୩।

ନଡ଼ିଆକୁ ଲୁଣି ମାଟି ଗୁଣ୍ଡି ଧର ସଅଳ
କପା ଗଛ ଲଗାଇବ ପାଖା ପାଖି ବହଳ
କୂଳ ପାଖେ ଡ଼ାଳ ଥିଲେ କାଳପୂରେ କୃଷୀର
ଯୋଗଷ ବହଳ ଘଇ .ଗ୍ରଇ ବୁଣେ ପାତଳ
କୃଷ ଡ଼ାକେ ଆସ ଆସ ମାଟି ଚନ୍ଦ୍ରେ ଜନ୍ମୁଷ୍ଟ
ହସେ ଧାନ କିଆର ।୪।



॥ ୯ ।

ଘୋର ଶନିବାର ଢଣିଗ୍ରା ପହର
ଅମେଇଷା ନଶା ରାତଲେ
ଜୁଳୁ ଜୁଳା ପୋକ ଜକ ଜକ ଜକ
ଚରଗୁଣୀ ଜାଲେ ବଣ୍ଠଲେ ।୧।

ବାବନା ଭୂତଟା ଗଡ଼ି ଗଡ଼ି ଯାଏ
ହୁଁ ହୁଁ କାର ହୁଁ ହୁଁ
କବନ୍ଧ ନାଚୁଛି ପିଚାଶୁଣୀ ପାଶେଁ
ପ୍ରେତ କାନ୍ଦେ ଖୁଁ ଖୁଁ
ମାଟି ଘୋଡ଼ା ଚଢ଼ି ଯାଆନ୍ତି ବାଶେଲୀ
ପାଶେ ଝିଅ ପୁଅ ନାଚ ଲେ ।୨।

ନଈ କୂଳେ କୂଳେ ଝଂଟା ନଟା ବଣ
ନଗ୍ନଟିଆ ଆମ୍ବ ତୋଟା
ବାରହା ଖଡ଼ ଖଡ଼ ବିଲୁଆର ଫେଉ
ଜଗି ବସିଲଣି ହେଟା
ବାଦୁଡ଼ି ଝୁଲୁଛି ଡେଣା ଫଡ଼ ଫଡ଼
ଥର ଥର ଉଠେ ଗୁଢ଼ଲେ ।୨।

ଶଠ ଦଳ ମେଣ୍ଢା ପ୍ରବଳ ହେଲେଣି
ପର ତଣ୍ଟି ଚିପିବାକୁ
ଜଣେ ଘର ଭେଦୀ ଆନ ପର ବୁଦ୍ଧି
ଦୁଇ ଜଣ ଖାଣ୍ଟି ତାକୁ
ଅସଲ ବେଳକୁ ଅକଲ ହଜିବ
ଯମରାଜା ହେବେ ସାଥିଲେ । ।୩।

॥ ୧୦ ॥

ଶୀତଳ ଘରର ଗାଁ ଝିଅ କାନ୍ଦେ
ଲୁହ ତା'ର ଗହରର
ଝରି ଝରି ଯାଏ ମରମ କୁସୁମ
ମଉଯାଏ ସଉରଭ
ଫୁଲ ଘୁଞ୍ଚି ଘୁଞ୍ଚିଯାଏ
ଫୁଲ ତୋଳିବାକୁ କର ବଢାଇଲେ
ଜଳତ ଅଥଳ ହୁଏ, ।୦।

ହଳଦି କାଠୁଆ ଛତୁ ଫୁଟିଲା
କଜ୍ୱଳ ପାଢରେ ଗୁଣ୍ଡି ପଡ଼ିଲା
ପରୁଢ଼ି ମଶିଣା ଉଇ ଖାଇଲା
ଲଗନ ବେଳତ ଉଛୁର ହେଲା
ଫୁଲ ଘୁଞ୍ଚି ଘୁଞ୍ଚି ଯାଏ ।୧।

ପଇସେ ମୂଳରେ ମନ ହେଲା ବିକାବିକି
ବଉଳ ମୂଳରେ ସିଦ୍ଧ ଠାକୁରାଣୀ ସାକ୍ଷୀ
ପିତଳ ମୁଦିରେ ବରଣ କରିଛି ବର
ଗାଁ ଗୋହିରୀର ଗୁଡ଼ରେ ରହିଛି ଗାର
ଲାଜ ସରମରେ ଭୁଲି ହୁଏ ନାହିଁ ବାଟ
ଗାଧୁଆ ତୁଠରେ ନିତ ବସେ କନ୍ଦାହାଟ
ସହି ହୁଏ ନାହିଁ ତୁନ ତୁନ ସାନ କଥା
କହି ହୁଏନାହିଁ ଗୁହାର ପରଶ ବ୍ୟଥା,
ଫୁଲ ଘୁଞ୍ଚି ଘୁଞ୍ଚି ଯାଏ ।୨।

ବୋହୂ ହେବାଲାଗି ବହୁ ଆଶାକରି
ଗଲା ଯେବେ ଶାଶୂଘର
ଗରିବ ବୋଲିକ ସରବ କଷଣ
କରମରେ ଲେଖା ତା'ର
ଗୁଣ୍ଡେ ଦେଇ ଖୁନ୍ଦେ ମାରି
ଗାଲ ପିଞ୍ଚି ନଖେ ଚିରି
ନିତି ସହେ ଶତ ଅପମାନ
ସହଣିକ ଗାଁ ଝିଅ
ଗଞ୍ଜରବ ତା'ର ଲୁହ
ସ୍ୱାମୀ ପଦେ ଥିଆ ତାର ମନ
ତେଣାରୁ ସଞ୍ଜୁଆ ଖସ
ପୋଛି ଦେଇ ହଡ଼େ ପାସ
ସୁନା ପୁଟ ଦିଆ ଦିନ ଯାଏ
ଅନ୍ଧାରେ ପାହାଡ଼ ଭଳି ରାକ୍ଷସ ଆଖି ପତେ
ସନ୍ତ୍ରାସ ଫେର ଫେର ଗୁହେଁ ।୬।



## || ୧୮ ||

ଗାଁ ଗୋହିରୀ ଅଳପ ଗୁଡ଼ି·ପୋଖରୀ ଆଡ଼
ଆମ୍ବ ପଣସ ଧାଡ଼ିକ ଧାଡ଼ି ଗୋହିରୀ ଗୁଡ଼ି |୦|

ଅସୁର କେନ୍ଦୁ ଖୋଳେଇ ଥିଲ
ପୋଖରୀ ନାଁ ଅସୁରୀ ହେଲ
କାନ୍ଥ ଆଖି ପରି ପଡ଼ିଲା ଜଳ
ଡାଲେ ପାଣିରେ ବି ଦିଶଇ ତଳ
ପଦୁଁଅ ଫୁଟେ ମହକଛୁଟେ ଚଡ଼ଳ ଖେଳେ
ଚକାଭଉଁରୀ, ଯାଏ ପହଁରି, ଆମ ଗାଁ ପୋଖରୀ |୧|

ପାଣି କାଉ ଡାକେ ମାଛରଙ୍କାକୁ
କ୍ଷେତ କିଆରିରେ ଝୁଲଇ ଆଖୁ
ମାଟିଆ ଚଲର କଅଁଳା ଛୁଆ
କାଣ୍ଠି ବଗ ସଙ୍ଗେ କରେ କଜିଆ
କଚମ ଦେଖ, ଝେଙ୍କଛିବେଙ୍କ, (ଏହୁ) ପାଣି ଗୋଧିର-
ଗରବ ଭରି, ଯାଏ ପହଁରି, ଆମ ଗାଁ ପୋଖରୀ |୨|

ଗରମ ଦିନ ଦିପହରେ
ତୋଟା ଗହଳେ ତରୁଣ ଖେଳେ—
ବନସି ଖେଳ, ତରୁଣୀ ଆସେ ଛପି ଛପିକି
କଅଁଳ ମନ ଦେଇଛୁ ବିକି
ନିଜକୁ ଭୁଲି ବୁଲୁଛୁ ରାଣୀ, ବନସି ନଣ୍ଡା ଆଣୁଛୁ ଟାଣି
ଖାଲି କଳସି କାଖରେ ଧରି, ଆମ ଗାଁ ପୋଖରୀ |୩|

॥ ୧୨ ॥

ଗାଁଆଁ ପାର ହେଲେ ବୋଉ
ନାଆଁ ମୋର ଲୁଚବ
ଏବୁଣ୍ଟି ବଂଧ ଢେଉଁଲେ
ତୋ ମୁହଁକୁ ଘଷିବ ।୦।

ପିଲ୍ଲ ଦିନ ଫୁଲ୍ ଖୋଷା
ଲମ୍ବ ଲଂଜ କଜଳ
ମନେ ପଡ଼ିବ ବୋଉଲୋ
ମୋ ସଙ୍ଗ ସାଂଗ ମେଳ
ଉଚ୍ଛୁର ଗାଧୁଆ ଦିନେ
ଶୁଖେ ନାହିଁ ମଥାଲୋ
ବେଣୀ ବାନ୍ଧି ଦେଇ ବୋଉ
କହୁ କେତେ କଥା ଲୋ
ମୋ ବୋଇତ ହାଣ୍ଡି
ଦ୍ୱୀପ ସେ ପାରରେ ଲଗିବ
ଦିନ ପରେ ମାସ ଯିବ
ବାହୁନି ନ ଫେରିବ ।୧।

ସାତ ପରୁଶଆ କହ୍ନି
ସୋରଷର ରାଇତା
କାଠି ମଗ୍ର ଲୁଣ ଭାତ
ମୋ ଲାଗିତ ସାଇତା
ଝୋଇସ ମଛିବାସ
ବସା ଦାହୁ ପଖାଳ
କିଏ ଦେବ ମନ ଜାଣି
ଫାଟିଲା ମୋ କପାଳ
ମଙ୍ଗଳ ଘଟ ଉଠିଲେ
ଘଟ ମୋର ଉଡ଼ିବ
ଅଷାଢ଼ିଆ ସୁତାଫିଟି
ପାଣିରେତ ପଡ଼ିବ ।୨।

ଠେକ ଠେକ ପାଣି ଜଳ
ଢେକି ଢେକି କୂଅରୁ
କେତେ ଝାଳ ବୋହିଯିବ
ବୋଉ ମୋର ମୁହଁରୁ
ନଣନ୍ଦର ବର ବର
ଶାଶୁ ଗର ଗର ଲୋ
ମୁହଁ ଫଣ ଫଣ କରି
ରହିବେ ଶଶୁର ଲୋ
ଡୋଗିଣି କଂସାରେ ବୋଉ
ଲୁହେ କଂସେ ବୋହିବ
ଆହା କହିବାକୁ କେହି
ସାହା କେହି ନ ଥିବ                    ।୩।

ପେଜ ଭାତ ମୁଠେ ଦେଇ
କେତେ ଗୁଣ ଖୁଣିବେ
ଗଣ୍ଡାଏ ରଂଧା କେଉଣ୍ଡି
ସାତଥର ଗଣିବେ
ସବୁ ସହି ଅହ୍ୟ ଗୁଣୀ
ହୋଇକି ମୁଁ ମରିବି
ଭୁଣ୍ଡେ ମାଛ ହାତେ କାତ
ଆଇ ସତେ ଡରିବି
ଝଇ କଉଡ଼ି ମୋ ଶବ
ଯିବା ପଥେ ପଡ଼ିବ
ରୂପ ମଶାଣିକୁ ଗୁଣ
ସଂସାରରେ ରହିବ ।                    ।୪।

●

## ॥ ୧୩ ॥

ଗାଁ ମାଟି ମୋତେ ଡାକେରେ, ଆ ଘରେ ଫେରିଆ
ସନ୍ଧ୍ୟା ଜଙ୍ଗଲ ପାଖ ଚଳର ମାରେ
ଚନ୍ଦନା କୁଆ ପାଖେରେ ।୦।

ଛନ ଛନଆ ଗୁଣ୍ଡୁଚି ମୂଷା ଡାକୁଛି ମୋତେ ଆ'
ବଣ ମାଳତୀ ମଧୁକ ପାଇ ନାଚେ ଚଗଲ ବାଆ
ଡାକେ ଆ —
ଛଣି ଫୁଲର ହାଟ ବସିଛି ନଈ ଅଡ଼ଡ଼ା ବାଙ୍କରେ ।୧।

ପାକଲା ଜାମୁ ଝଡ଼ୁଛି କେତେ କଆ ପସନ୍ତ ପାଚେ
ତେଣା ହଲାଇ ପରଜାପତି ଫୁଲ ଉପରେ ନାଚେ
କୁନ୍ଦ ବାଛୁରୀ ଝପଟ ଦଏ ମା'ଗୁଳି ଗାଈ ପାଖେରେ ।୨।

ସେର ପୂରିଲା ମାଣ ପୂରିଲା ଉଠ୍ ମୋର ପୁତା
ଗାଁ ମୁଣ୍ଡର ମୁଣ୍ଡା ଦେଉଳେ କାନ୍ଦେ କପୋଙ୍ଗ ମାତା
ଟେଉ ଟେଉକା ଶାଗୁଆ କ୍ଷେତେ
ଝୁପୁର ମେଘ ନାଚେରେ ।୩।



## ।। ୧୪ ।।

ଘୁଡ଼ି ଉଡ଼ିଯା ଉଡ଼ି ଉଡ଼ି ଯା'
ଖୋଲ୍ ଦେଲି ଡୋରି ଫେର୍ ଆଗେ ମାଡ଼ିଯା' ।୦।

ଝିଲ୍‌ମିଲ୍ ଚଇତାଳି ବୁଲି ବୁଲି ଆସୁଛି
ସରୁସରୁ ମଛକାଣ୍ଡ ଧଳାମେଘ ଭାସୁଛି
ଉଡ଼ିଯା' ମୋ ସୁନା ଗୁଡ଼ି ଜହ୍ନମାମୁଁ ଗାଁକୁ
କୁନି କୁନି ତାରା ଥିବ କୁଆଁବୁନି କାହାକୁ
ସନ ସନ ପବନରେ ଗୀତ ଗାଇ ଯା' ।୧।

(ହେଇ) ଓଳେଇ ଆଟିକା ଖାଇ ନାନୀ ମୋର ଧାଉଁଛି
ଚିଙ୍ଗି ଚିଙ୍ଗି ଗୁଲି ଦେଖ ଆଖି କାଢ଼ି ଗୁହୁଁଛି
ନଟପାଟ ବସାରେ ହେଇ ପଶିଲାଣି ଡେମଣା
ନାନୀ ମାଡ଼ କାଟେ ନାହିଁ ଲାଗେ ମୋତେ ଅଲଣା
ଆ-ଆ ବକମିନା ମୋ ନାନୀକି ନେଇ ଯା ।୨।

ନଈଁ ଡୋଳୁଥିଲୁ କଈଁ ପୋଖରୀରେ ପଶିକି
ସଞ୍ଜଅ ଶରଣ ଆସି ଟାଣି ନେଲା ହସିକି
ଟାଣିନେଲା କାନକି
ଓଳି ମୂଳ କୋଳି ଗଛୁଁ ବରକୋଳି ଝଡ଼ିଲା
ସଜ ବେଳେ ମନ୍ଦିରରେ ଘଣ୍ଟା ଘଡ଼ି ବାଜିଲା
କୋଇଲି ବୋଇଲା କୁଉ-କାଉ କଲା କା-କା ।୩।



## ॥ ୧୪ ॥

ଚକା ଚକା ଭଉଁରୀରେ ମାମୁଁ ଘର ଚଉଁରୀ
ଘୁରି ଘୁରିକା ଖଣ୍ଡିଆ ଭୂତ ଖେଳୁଛି ଚକା ଭଉଁରୀ । ୦ ।

ନାଲି ଟୁଁ ଟୁଁ ଚଢେଇ ଦଓଟି କେଉଁଠୁ ଉଡ଼ି ଆସିଲେ
ଫୁଲ ଡାଳରେ ଧୀରେ ବସି ଥଣ୍ଟରେ ଥଣ୍ଟ ଘଷିଲେ
ଚଢ଼େଇ କାନ୍ଦେ ଉଁ, ଉଁ, ଚଢ଼େଇଆ କହୁଛି ତୋର ମୁଁ
ଆଉ ଗାଁର ବାହାଘର କି ବାଜୁଛି ଯୋଡ଼ି ମହୁରୀ । ୧ ।

ରଜା ପୁଅଟି କେଉଁଠୁ ସତେ ହାତୀରେ ବସି ଆସିଲା
ବାଣ ନାହିଁ କି ରୋଷଣୀ ନାହିଁ ନିଜ ମହଲକୁ ଯାଇଲା
କନିଆ କାନ୍ଦେ ଉଁ ଉଁ, ବର କହୁଛି ତୋ ର ମୁଁ
ବେଦୀ ଉପରେ ଜୁଆ-କଉଡ଼ି ଖେଳିବ ବୋଲି ଆତୁରି । ୨ ।

ବୁଢ଼ା ବ୍ରାହ୍ମଣ ହେଲାଏ ଚୁଟି ନାହିଁକି କାଶେ ଖୁଁ, ଖୁଁ
ଭଜନା ମା ଗୋଦରଗୋଡ଼ୀ ଫୁଁକୁଛି ଶଙ୍ଖ ଫୁଁ, ଫୁଁ
ଶାଗ ଭାତ ତୁଣରେ, ପଡ଼ିନାହିଁ ତ ଲୁଣରେ
କନିଆଁ ସ୍ୱେଶ ହୋଇ ଗର୍ଜିକ ପଡ଼ିଗଲାରେ ହାଉଳି । ୩ ।



॥ ୧୭ ॥

ଚାଉଳ ଧୋଇ ସିବୁ ନାହିଁ କଲେ
ଆସେ ଅଂଧାର ମାଡ଼ି
ଗାତୁଆ ପେଗ୍ଲ କୁହ୍ନେଇ-ଲଣି
ପୁଣି ହୋଇଛୁ ନଈ ବଢ଼ି
(ମୋ ବଉଳେ) ବାଲୁଆ ଢଏ ରଙ୍କି ।୦।

ଖାଟ ଜଗିବ ଅଂଧାର ଆସି
ନଈରେ ଯିବ କଳସି ଭାସି
ଓରେଇବ ଲେ ଭଜୁଆ ମାଆ ବାଟେ ପଢ଼ୁଛୁ ମନ୍ତ୍ର,
ଝିଲ୍ ମିଲ୍ଅ ବଳୁଳି ପୋକ
ଆଲୁଅ ବୁଲା ଠାଣିଠା ଦେଖ
ଗାଆଁ ମଙ୍ଗଳା ମନ୍ଦରେ ବାଜେ ଆରତି ଘଣ୍ଟା ଘଣ୍ଟ, ।୧।

॥ ୧୬ ॥

ଛୋଟ ଗାଁ'ଟି ମୋ ଦେଶରେ
ଟିକି ଘରଟି ମୋ ଦେଶେ
ତାଳ ନଡ଼ିଆ ଧାଡ଼ିକି ଧାଡ଼ି
ଘେରିଛି ଘରପାଶେ ।୦।
ଅଙ୍କା ବଙ୍କା କିଆ ଗୋହିରି
ଏହି ଅରମା ବାଟ
ଶାସନ ଦେଇ ମିଶିଛି ଯାଇ
ଯହିଁ ମଙ୍ଗଳା ପୀଠ
ତୋଳନ୍ତି ଦାଣ୍ଡେ ଧୂଳିର ଘର
ଗାଆଁ ପିଲାଏ ହରଷେ ।୧।

ପୋଖରୀ କୂଳେ ଦେଉଳ ଚୂଳେ
କପୋତ ଦିଏ ତାନ
ସେର ପୂରିଲା ମାଣ ପୂରିଲା
ହଉ ବାପ ଧନ
ଭରି କଳସୀ କାଖରେ ଧରି
କୁଳ ବୋହୂଟି ଆସେ ।୨।

ଗାଁ ସେ ପାଖେ ସରୁ ସଡ଼କ
ଝାଂପୁରି ବର ତଳେ
ଗରମ ପାଇ ବସି ବାଟୋଇ
ଥିର ମନରେ ଚଳେ
ଲଙ୍ଗଳ ଧରି ଚଷା ପୁଅଟି
ଲଗିଅଛି ତାର ଗୁଣେ ।୩।

ମଇଁଷି ଗୋଠେ ଗୋପାଳ ପୁଅ
ବଇଁଶୀ ଫୁଙ୍କେ ବସି
ସର ଲହୁଣୀ ଖିରକୁ ଖିର
ଦେଖି ତା ମନ ଖୁସି
ଦୁଧ ମାଛରେ ଭରି ମୋ ଗାଆଁ
ତେର ଯାତ ବାର ମାସେ ।୪।

କାହିଁରେ ମୋର ନାହିଁ ଅଭାବ
ଗୃହିଁ ଅଛନ୍ତି ସାଇଁ
କ୍ଷେତରେ କେତେ ଫଳୁଛି ଫଳ
ତୁଳନା ତାର ନାହିଁ
ସରଗ ଠାରୁ ବଳି ମୋ ପଲ୍ଲୀ
ଗାଁ ମାଟି ମୋ ହସେ ।୫।



॥ ୧୮ ॥

ଜୀବୁଣ୍ଡ ବାଉଳି ନାମ ପାଇଛୁ
ଚଟି ନେଇ ତୁମ ପାଖେ ଧାଉଁଛୁ,
ଝୁଙ୍କୁରି ମେଘ ଅସରା
ବାଟ ହୋଇଛୁ ଖସରା
ପଡ଼ିଯାଇ କେତେ ଲଡ଼ୁ ଦେଇଛୁ,
ଚଟି ନେଇ ତୁମ ପାଖେ ଧାଉଁଛୁ । ୦ ।
(କେଉଁଠି)
ପାଇକ ସାହୁ ସେପାରି ଆଙ୍କ ବଣ ପାଖରେ
ଯୋର କୁଳ ବରମୂଳ ରାମଚଣ୍ଡୀ ବାଙ୍କର
ଦଲଟେକ ବଳରାମ ଧରୁଥିଲା କଙ୍କଡ଼ା
ବନଶୀ ପକାଉଥିଲା ସାହୁଘର ଶୁକୁରା
ସେଇଠି ଏ ଚଟି ଜଣେ ଦେଇଛୁ
ନେହୁରା ହେଇ ସେ କେତେ କହୁଛୁ । । ୧ ।
(କେତେବେଳେ)
ଘୁଇର ଓଢଣା ଦେଇ ମାଈ ଫଳ ଅଇଲା
ହେଁସୁଆଡ ବଣ ବଗ ବେକ ଟେକ ରହିଁଲା
ସେତକ ବେଳରେ ଚଟି ଦେଇଗଲେ ପଳାଇ
ତୁମେ ଫୁଙ୍କୁଥିଲ ଶଙ୍ଖ ଫଳବଗ୍ଣ ଜଳାଇ
ପରଚଟି ପଢିବୁନ କହୁଛୁ........................
କେତେ ଲୁଗ୍ଣ ଗ୍ଣେସ୍ରା କଥା କହୁଛୁ । ୨ ।
(ସେ କିଏ ?)
ତୁମକୁ ଦେଖି ଯେ ହସେ ଓଠ ଚପି ଅଲପ
ତୁମେ କାନ ସୁଁ-ସୁଁ-ସିଏ କରେ ଗଲପ
ମୋତେ ଡ଼ାକ କହେ ତୁନ ମୁହଁ ତୋର ଭଣେଇ
ସିଏ କିଏ କୁହ ନାମ ଦିଅ ମୋତେ ଜଣେଇ
ସ୍ତ୍ରଣ୍ଟେ ଚଟି ପଢ଼ ମୁହିଁ ରହିଁଛୁ
ମା' ନାହିଁ ପାଣି ଆଣି ଯାଇଛୁ । ୩ ।



## ॥ ୧୯ ॥

ଜହ୍ନ ଜର ଯାଏ ଝର ଝର
ମନ ଛନ ଛନ ଥର ଥର ।୦।

ଡମ୍ବର ସହର ସୁନ୍ଦର ଦିଶେ
ବାରବୁଲା ମେଘ ଗଗନେ ଭାସେ
ଶେଫାଳିକା ଫୁଟି ଅଧରେ ହସେ
ପବନ ବହୁଛି ଥିର ଥିର ।୧।

ଜୋଛନା ଜୁଆରେ ଦୋହଲେ ମନ
ସୁନା ଶାଖା ପର ନାଚେ ଫଗୁଣ
ବୋଳି ଦେଇ ଯାଏ ଚମ୍ପା ଚନ୍ଦନ
ଝରଣା ଝରଇ ଝର ଝର ।୨।

॥ ୨୦ ॥

ଟାଣିନେଲ୍ ଶସ୍ କଏ
ଟାଙ୍ଗିଦେଲ ଗ୍ରାଇକି
ଜାନନା କପୋଣ୍ଡ ମାତା
ମଲବୁଥା ପାଉଁଜ ।୦।

ଗାଡର ବୁଢୁର ଭୁକେ
ଟୁପୁଟୁପୁ ବରଷା
ଘୁଅ ଝୁଅ ଚଲେ ଗୁଲି
ଘମ ମୋର ଭରସା
ନୁଆଁଣି ଗୁଲ ମଥାନ
ଭଙ୍ଗାଘର ଗୁହିଁଛି
ଘାସ ଛଡ଼ା ବାଲ୍‌ବୁଦେ
ନାଆ ମୋର ଡ଼ାକୁଛି
ଶୋଇଛୁ କାହିଁକ ଧନ
ନଦ ଭାଙ୍ଗୁ ନାହିଁକ ।୧।

ଡାଲ ଗଜା ପିଠା ଆଜ
ନାମ ତୋର କରିଛୁ
ଭଂଗା କାନ୍ଥେ ନାଲ୍ ନେଲି
କେତେ ଚିତା ଲେଖିଛୁ!
ନୁଖୁରା ହଳଦ ମାଖି
ଗାଧୋଉଛୁ ନଈରେ
ଡ଼ାକୁଛୁ ପା’ ନାମ ତୋର
ନଦ ଭାଙ୍ଗୁ ନାହିଁରେ
ବାଦୁଡ଼ି ଝୁଲୁଛୁ ଢେଣା
ପଡ଼ବୁନ ଚଇଁକି ।୨।

## ॥ ୨୧ ॥

ଡାଆଣୀ ଆଲୁଅ ଜାଳେ
ଡାକିଲଣି ବିଲୁଆ
ଝିପି ଝିପି ମେଘଘଡ଼
ଫେରିଆ ମା' ଫେରିଆ
ମଇଁଷି ଗୋଠରୁ ନିଆଁ ଜୁଳୁଜୁଳୁ ଦିଶୁଛି
ଗାଁ ମଂଗଳା ପିଠରୁ ଝୁଣାଧୂଆଁ ବାସୁଛି
ସୁସୁ ବା' ବହେ ଦେହ ଲଗେ କାଲୁଆ ।୧।

ବର ଓହଳକୁ ଧରି ଝୁଲୁଛନ୍ତି ବାଦୁଡ଼ି
ଦେହ ସାରା ଆଖିତାର ଲମ୍ବୁ ଘୁଣ୍ଟେ କରାଳ
ଗୁଣିଆ ବୁଲୁଛି ଏକା ହାତେ ନିଆଁ ଧରିଆ ।୨।

କୋଚିଲା ବଣରୁ ଥାଇ ଭୂତ ଗୁଡ଼େ କୁହାଟ
ନିଦରେ ଅଚେତ ଗାଁ ରୁନ୍ଧି ଡାଟି କବାଟ
ମୋ ମଣି ମୋ ଧନମାଳୀ
ମୋ କୋଳକୁ ଫେରିଆ ।୩।



## ।। ୨୨ ।।

ଫିମ୍ପ ଖାଲ୍ ମାଳ ଭୂଇଁ
ଦୂରେ ଦୂରେ ଗାଁ ସହି
ଗେଣ୍ଡାଳିଆ ଶଙ୍ଖଚିଲ୍
ବକ ମାଳ ମାଳରେ
ଛନ୍ଧି ମୋ'ର ଘର—— ।୦।

ବାହୁଡା ଶଗଡ଼ ଯାଏ
ଡୋଣ୍ଟା ମାଳ ଦେଇରେ
ବଉଳା ବଳଦ ଗୃଲେ
ମୁଣ୍ଡ ଦୋହଲାଇ ରେ
ଲାଂଜକୁ ହଲାଇ
ବାଉଁଶ କରଞ୍ଜ ବଣ
ତାଙ୍କେ ମୋ ଗାଁ ମଥାନ
(ସହି) ବାଇଆ ଚଢେଇ ବସା
ଝଙ୍କା ବର ଡ଼ାଳରେ ।୧।

ଘଡ଼ ଘଡ଼ି ଚଢ଼ ଚଢ଼ି
କାଦୁଅର ଝଙ୍କରେ
ଭୁଲା ଭୁଷା ଧଳା ମେଘ
ଯାଏ ଉଡ଼ି ଉଡ଼ିରେ
କାଙ୍କଡ ଧରଇ କଷି
ବାଲ୍ଲ ଛତୁ ଦାଏ ହସି
(ସହି) ଝଡ଼ି ଫଗେ ବଢି ଆସେ
ପୁରେ ନଈ ନାଳରେ ।୨।

ଯୁନା କନ୍ହି ଫୁଲ୍ ହସେ
ଲହୁ ଝେକେ ଡାହୁରେ
ରଂଜା ଡେଇଁ ମାଡ଼ିଯାଏ
ନାଲ୍ ନେଳ ପୋଇରେ
ଆଖୁ କ୍ଷେତ ଦୋହଲଇ
ବା’ ପାଣି ଯାଏ ବହୁ
ମୋ ଗାଁ ତୁଲନା ନାହିଁ
ମଞ୍ଚ ମଣ୍ଡଳରେ ।୩।



## ॥ ୨୩ ॥

ଆ’ ମାଟିମାଆ ଯାଉଛୁ
ମଗୁଶିର ମାସ ଧାନଶିଂଷା ଟେକି
ଦୂର ଗାଁଆ ବିଲ ଡ଼ାକୁଛୁ ।୦।

ସମିତ ଘରକୁ ଭୁଲିବ କେମିତ ଠାକୁର ଆରତି ବେଳେ
ଆଙ୍କୁଡ଼ି ଲଗାଇ ବରକୋଳି ତୋଳା ଡ଼ାଳମାଙ୍କୁଡ଼ର ଖେଳ
ରସୁଣିଆ ଆମ୍ବ ଝର ଝର ପଡ଼େ
ପାଚିଲା ପିଜୁଳି ଦିଶୁଛୁ ।୧।

ଚକଉ ଛୁଆଁସ ପିଠା ଥାଳି ମିଠା
ଆଖି ଆଗେ ନାଚେ ମୋର
ଭାଦର ମାସର ଖୁଦୁରୁ କୁଣିଆ
ଫିଟିଥାଏ ମେଘ ଝର
ଫେଣଫିଙ୍ଗି ନଈ ଲହରୀ ଖେଳାଇ
ଗାଁ ଗଣ୍ଡା ଧୋଇ ନେଇଛୁ ।୨।

କାଞ୍ଚିପୁଷି ମିନ ମୋ ସୁନାଟିଧୂରେ
ମୋ ଲାଗି କାନ୍ଦିବ ନାହିଁ
କୁକୁର ବିଲେଇ ଭାବନ ତୁମକୁ
ମଣିଥିଲି ସାଂଗ ଭାଇ
ଗାଁ ଦାଣ୍ଡ ଘାଟ ବିଲଗଛ ମାଳ
ଜୁହାର ରଖିଲି ଯାଉଛୁ । ।୩।



## ॥ ୨୪ ॥

ଧାନ ପାଚିଲାରେ ଦୁଃଖ ଘୁଞ୍ଚିଲା ମୋ
ବରଷକ ପରେ ଦୁଃଖ ଘୁଞ୍ଚିଲା ।
ଜାକି ଧରି କଣ୍ଟି ଫଟାଇଲି ମାଟି
ଶୁଭ ଦିନେ ଦେଲି ଅକ୍ଷି ମୁଠି ଗୁଣ୍ଟି
ସୁନାର ଲଙ୍ଗଳ ରୂପାର ଯୁଆଳି
(ମୋ) ମାଣିକା ବଳଦର ମୁଣ୍ଡ ହଲି ଗଲା
ଖଇରିଆ ଦେହ ଖରାରେ ସିଝାଇ
ଖଟିଥିଲି ବୋଲି ସୁନା ଫଳିଲା ।୧।

ଗଜା ଧାନ ରଜା, ରୁଆଧାନ ଥୁଆ
ଆଷାଢ଼ୀ ଲଗାଣେ ବଢ଼ିଗଲା ବୁଆ
ଝିପିଲି ଝିପିଲି ବରଷିଲା ପାଣି
ଢଳିବା ପଦ୍ମକେ ଘର ଲେଉଟାଣି
ମୋ ଧାନ କିଆରି ପଡ଼ୁଛି ଉଛୁଳି
(ମୋ) ବଟଲ ଲକ୍ଷ୍ମୀର ଝାରି ଆଞ୍ଜୁଳା ।୨।



## ॥ ୨୪ ॥

ଫୁଡ଼୍‌କା ଖଇ, ସୁଡ଼୍‌କା ଯଉ
ହାମ୍ପୁରି, ହାମ୍ପୁରି ଖାଉଛୁ । ।୦।

ଖାଲି ଫୁକୁରୁ ଫୁକୁରୁ ଡେଉଁଛୁ
ନୂଆ ଧଳାମର ବଡ଼ ଭଳାକୁ ଏ
କଣେଇ କଣେଇ ଚାହୁଁଛୁ
ଖାଲି ଫୁକୁରୁ ଫୁକୁରୁ ଡେଉଁଛୁ ।୧।

କଳା ବାଇଗଣ ହେଉଛୁ କାନ୍ତି
ପୋଶଷ ଢଆ ସଲଗ୍ ଭାଜି
ଅଖାଇ ଲଙ୍କଶି ପାଉଛୁ
ତାକୁ ଲଙ୍କା ମୁଣ୍ଡ ଧରି ଗିଳୁଛୁ
ଖାଲି ଫୁକୁରୁ ଫୁକୁରୁ ଡେଉଁଛୁ ।୨।

ତଣ୍ଟିରେ ଲାଗିବ କଣ୍ଟାରେ ଖଇ
ତଣ୍ଟିରେ ଲାଗିବ କଣ୍ଟା
ରହିବ ନାହିଁ ଏ ରଙ୍ଗ ତୋର
ହଲିବ ନାହିଁ ଅଣ୍ଟା
ଅଁର ଲାଗି ଭଅଁର ମଲା
ଢିପାରେ ନାଚେ ବାଲୁଆ ପିଲା
ଅନାରେ ନାଢ
କାଉ ନେଇଗଲା କଜ୍ଜଳ ପାଢ
କଳା କୁମୁଟିଆ ରହୁଛୁ ବସି
ଖାଲି କଟର ମଟର ହେଉଛୁ
ଖାଲି ଫୁକୁରୁ ଫୁକୁରୁ ଡେଉଁଛୁ ।୩।



॥ ୨୭ ॥

ନଈରେ ଅଳପ ଧୁଅ
ଚାହିଁଲେ ଦିଶଇ ମୁହଁ
ଖୋପା ଖୋସେ କୁଳବଧୂ
କଳସୀ ଥୋଇରେ, ଗୁଣ୍ଡଇବ ଗୃହିଁ । ୦ ।
କଣ୍ଟେଇ ଲଟି ଖଣ୍ଡି ବଣ
ଛାଉମାଟି ରଣ ଭଣ
ଯାଉଁଳ ଯନ୍ତ୍ର ଟେକଇ
ପଧାନ ଖାଇରେ, ଗୁଣ୍ଡଇବ ଚାହିଁ । ୧ ।
ଗେରୁଆ କୁହୁଡ଼ି ମାଡ଼େ
ଝରେ ଗୁଣ୍ଡି ଅମ୍ବର
ଜୁଳୁ ଜୁଳା ଫୁଲ ଫୁଟେ
ହସେ ଗଛ ପତର
ଉଡ଼ା ପକ୍ଷୀ ଡେଣା ଝାଡ଼ି
ଗାର କାଟି ଯାଏ ଉଡ଼ି
ନାଆକୁ ଅଝାଳ ଛାଡ଼ି
ହାଲୁଆ ଖାଇରେ, ଗୁଳିଛୁ ନଈ । ୨ ।
ଖାଇବୁ ଦୋରୁଅ ଝରେ
ନୂଆ ଗୁଡ଼ ବାସନା
ଅତର ଛାଙ୍କୁଣି ଖୋଲି
ବନ୍ଧୁ ଯାଏ ଦକ୍ଷିଣା
ନଈ କୂଳ ତୋଟା ମାଳ
ନାଲି ନାଲି ଧାନ ବିଲ
କେତେ ମଧୁର ନଗର
ଘୁମାଉ ନାହିଁରେ, ମୋ ଗାଁ ନଈ । ୦ ।

॥ ୬୭ ॥

ନା ନା ନା କହିପାରେନା
କଣ୍ଠା ବୟସର ବୋଝ ବହି ପାରେନା ।୦।

ଲୁହ ପୋଛୁ ଜୋଙ୍କୁଅ
ଅଧା ନଦେ ଗୀତ ଗାଏ
କଦମ୍ବ ଡୋଳାଏ ଘୁମେ
କଳା ଝୁଲ୍ ରାତ ଯାଏ
ତରା ଭରା ଗଗନକୁ
ଅଧା ଜହ୍ନ ଘଡ଼ିମାରେ
ସ୍ଥିତ ତାହା ବନ୍ଦିହଠେ ରହି ପାରେନା । ।

ହୀରା କଷି ଗାର କାନ୍ତି
ନଭ ତଳେ ଉଡ଼େ ଚିଲ
ଅଳସ ଗୁଆର ଖରା
ଚରି ଯାଏ ବଣ ବିଲ
ଅଧର ରଜନୀ ଗଂଧା
ମଦର ଅଲୋକ ତାପେ
ଅନନ୍ତ ନନ୍ଦିତ ବାଣୀ କହିପାରେନା ।୨।

ସପନ ଚଢେଇ କାଳେ
ମେଘ ପରି ଖୋଲେ କେଶ
ଚନ୍ଦର ମଲ୍ଲିକା ରାତ
ବନ ବୀଥି ଘନ ବାସ
ମାୟା ପୁଷ୍ପ ଛାୟାପଥେ
ତବ ପକ୍ଷୀ ମକ୍ଷୀ ହସେ
ଜାଳୁ ଜାଳୁ ଲୁହ ଆଖି ରୁନ୍ଧି ପାରେ ନା । ।୩।

## ।। ୨୮ ।।

୧ମା ନୀଦ ଅଳସୀ ମୋ ଝିଅ ଗୁଲୁ ଝିକ ଗୁପୁଣି ପାଉ
ପେଣ୍ଡି ଅଭେଡ଼ତରକଗୁହ୍ନଁ କାହିଁକ ଉଦଥା ଘୃନ
ବାପ ଘରର ପରୁଆଁ ଝିଅ
କାହାକୁ କଣ୍ଠ ଦେଉଛୁ କନ୍ଧ
ଆଖି କଜ୍ଜଳ ଭେଣ୍ଡିଆ ଠାର ଘାରୁଛୁ କଳେ କଦ

୨ଝି ରଂଗ ରଂଗେଣୀ ନବ୍ଵକା ଭଣି ଭୋ ପର ମୁହିଁ ନୁହେଁ
ସଡ଼କ କଡ଼ ଅରଖ ମୂଳେ ଲୁଚ ଲୁଚ ନ ଗୃହେଁ
ବରକୁ ଦେଇ ମସଲ୍ଲ ପାନ
ତୋ ପର ମୁହିଁ କଣେନ ମନ
ମଥାରେ ପାଗ ଖ୍ରଲିଆ ଖୋଷା କେବେକ ଗୀତ ଗାଏଁ

୧ମା ମେଘ ଝୋପି ଝୋପି କାଳ ଅଂଧାରେ
କଅଁ ସେଦନ କହ
ପଧାନ ଘର ନାରଣା ବୁକେ ଲୁଗ୍ବଇ ଥିଲୁ ମୁହିଁ
କଣି ଡ଼ାଲମ୍ବ କହୁନୁ କଥା
ଲାଜ ହେଲାକ ନଇଁଲୁ ମଥା
ଫୁଟିଆରାତ ହେଲାଣି ସବୁ ଧାଗ ପଡ଼ିବୁ ରହ

୨ଝି ଆଦ୍ୟ ଆଷାଢ଼େ ଚଢ଼ି ଦୋଳାରେ ଆସିବ ତୋଏ ବର
କୁଣ୍ଡାଖିଆ ତୋ ହୁଣ୍ଡା ବରକୁ ନେଇ କରିବୁ ଘର
ଆର ସାଲକୁ ହୋଇବୁ ମାଆ
ମୋ ସାନ କଥା ହେଉଛୁ ଥା
ଆଜର ସୁଖ ଶରଧା ଭୁଲ୍ କରିବୁ ସାଙ୍ଗ ପର

●

॥ ୨୯ ॥

ନିଦରେ ଶୋଇନ୍ତୁ ଗାଁରେ କୁନା ଧରିଛୁ ଗାଁ’
ବାଡ଼ ମଞ୍ଜାଙ୍ଗ ତୁ କଉଁଠି ଅଛୁ ଆ କକମିନା ଆ
ମୋ କୁନାର କାନ ମୁଠାକା ତହିଁରୁ କଳାଏ ଖା । ୦ ।

ଧୋରେ ବାଇଆ—ଢ୍ରୋରେ ବାଇଆ—ନାରେ ନାରେ ନା
ଝୁମୁକ କଟେଇ କାଲି ଦେବ ଆଜ୍ଜ ତୁ କାନ୍ଦନା
ରଙ୍ଗ ପାଲିଙ୍କିରେ ଥିଶ ବସି ଶ୍ୱଶୁର ଘରକୁ ଯା । ୧ ।

ହାତୀ ଦେବ, ଛତ୍ର ଦେବ, ଦେବ ସୁନା ଚଅଁର
ପାନ ଗୁଆ ବଟୁଆ ଦେବି, ଦେବ କଥାଁ ଖଇର
ନନ୍ଦ ମାଉସୀ ଲୋ ନନ୍ଦ ପିଉସୀ ନନ୍ଦ ଦେଇଯା । ୨ ।

ମୋ ପେଁକାଲୀ ରୂପ ହେଲା—କୁନା ପେଁକାଳି ପେଁ
ସୁର ଧରିଛୁ ବେଙ୍ଗୁଲି ଅପା—କେଁ କଟର କେଁ
ମେଘ ବରଷଇ ଝୁପୁରୁ ଝୁପୁରୁ, ବନ୍ଧୁଛୁ ହାଲପା ବାଆ । ୩ ।

## || ୩୦ ||

ନୀଦରେ ଶୋଇଛୁ ନେଳିଆ ପାହାଡ଼
ଉଡ଼ିଗଲେ ଶୁଆ ସାଙ୍ଗରେ
ଲଦା ଲଦ ହୋଇ ପଥର ପଙ୍କାନ୍ତୁ
ରଙ୍ଗ ମାଟି ଗୋଡ଼ ଅଳରେ ।୦।
ପୋଡ଼ ଜଳ ପୁଣି ଗଳା ଶାଳୁଆତ
କଅଁଳିଆ ଛନ ଛନ
କୋରେଇ ଫୁଲକୁ ଓଟେଇ ଦେଇଛୁ
କଇଁଚ କାକୁଡ଼ ବଣ
ହୁଡ଼ ମୂଳେ ଯାଏ ବାଙ୍ଗିଣ୍ଡି କଏଲେ
ବଉଳ କାନ୍ଧରେ ଖୋଷା
ଢ଼ିପି ଢପି ଗୁଲ ଖୁଲୁ ଖୁଲୁ ହସ
ଓଠରେ ବାନ୍ଧିଛୁ ବସା
ବାର ବାଙ୍କ ନଈ ଚଳ ମୁହାଁ ହୋଇ
ଝର ଝର ଯାଏ ଝର
ଉଡ଼ି ଗଲେ ଶୁଆ ସାଙ୍ଗ ।୧।
ଘୃଣ ପାଖେ ଧାନ ମୁରୁଗାର ବଣ
କୁନ ଶଣା ଛୁଆ ବୁଲେ
ଛପି ଛପି ଘୁହିଁ କଳାକୁମ୍ଭାଟୁଆ
ବସିଛୁ ଅଁଳା ଡାଳେ
ଢପାଖ ପାହାଡ଼ ମଝି ଖୋଲେ କଏ
ବଇଁଶି ବଜାଏ ବସି
କେଣତ ହେଲଣି କୋଣ ବେର୍ଣ୍ଣି ଆଲେ
ଫୁଲତ ହେଲଣି ବାସୀ
ଗାଁକୁ ଢାଙ୍କିଛୁ ବୁଲ୍ଲ ମେଘ ଖଣ୍ଡେ
ମଜୁର ଛୁଣ୍ଡୁ ଛୁ ରଡ଼
ଉଡ଼ିଗଲେ ଶୁଆ ସାଙ୍ଗ ।୨।

●

## ॥ ୩୧ ॥

ପାଖ ପାଖ ଲଗାଲଗି ସାନ ସାନ କୁଡ଼ିଆ
ସାପ ପର ଅଙ୍କା ବଙ୍କା ଗୋହିର
ଝୁଲି ଝୁଲି ନାଲି ଗାଈ ହମ୍ବା ହମ୍ବା ଡାକଇ
ପାଖେ ପାଖେ ଚାଲେ କୁନି ବାଛୁରି ।୦।

କରମଙ୍ଗା କଷି ଧରେ
ଠିଆ ଜହ୍ନ ପାହାନ୍ତ
ଶୁଆ ସାରି ଡାଳ ବଣେ
ବସି ରବ ଦଅନ୍ତ
ଲମ୍ବ କଷି ଆମ୍ବ ଚଣା
ବାଆ ଲଗି ଝରଇ
ଖରା ଦିନେ ପାଚେ କଆ ସପୁରି ।୧।

ପାଳଧୂଆ ନାଲି ଫୁଲ
ଗା ଦାଣ୍ଡେ ଝରଇ
ମଉସୁମୀ ମେଘ ଆସେ
ଚାଷି ଘରେ ଫେରଇ
ରହାବାଲୀ ଗାଁ ଝିଅ
ଧରି ବୁଲେ କଳସୀ
ଦୂର ବିଲେ ଶୁଭେ ଡାକ ସବାରି ।୨

## ।। ୩୨ ।।

ପାହାଡ଼ ଉପରେ ବାଉଁଶ ବଣ
ମୟୂର ନ ପାଏ ସନ୍ଧ .....
ହାତୀ ବୁଲୁଥାଏ ଧୀରେ
ବା-ବନ୍ଧୁଯାଏ ଧୀରେ
କଞ୍ଚା ଜର ଜର ପାଣି ଝର ଝର
ଝରଣାର ସ୍ୱରେ, ସ୍ୱରେ......
ବା-ବନ୍ଧୁଯା ଧୀରେ ।୦।

ନାଲି ଖଣ୍ଡି ତଣ୍ଡି ହେଁସୁଆଢ ବଣ
ହୁଡ଼ି ତଳୁ ଡ଼େଇଁ ଡୁବି ଯାଏ ଜହ୍ନ
ଗହନ ଲତାରେ ଅନ୍ଧାର ପକ୍ଷ
ବାସୁଲୀ କୁହାଟ ମାରେ ..
ବା-ବନ୍ଧୁଯାଏ ଧୀରେ ।୧।

ପତରର ଘର କଣ୍ଟାବାଡ଼ ଘେରା
ଓଉ ଗଛ ପାଖେ ଲାଉ ଫୁଲ ଭରା
ଘର ଅଗଣାରେ ଜହ୍ନର ତରାସ
ଜହ୍ନି ଫୁଲ ଫୁଟି ଝରେ
ବା-ବନ୍ଧୁଯାଏ ଧୀରେ ।୨।

ସାହା-ବୁଢ଼ା ବେଳ କାଠ ଗୋଛ ଧର
କାଖରେ ମାଠିଆ ଛୁଆ ବୋଝ ଭରି
ଡ଼ିପି ଡିପି ଯାଏ ଆଦିବାସୀ ମାଆ
ଡ଼ିପ ଖାଲ ମାଳ ପରେ
ବା-ବନ୍ଧୁଯାଏ ଧୀରେ ।୩।



## ॥ ୩୩ ॥

ବାଘ ପାଣି ପିଏ ଚୁକୁଲୁ ଚୁକୁଲୁ ,
ଭାଲୁ ପାଣି ପିଏ ପାକୁଲୁ ପାକୁଲୁ ,
ମୂଷା ଧାନ କାଟେ କୁଟୁରୁ କୁଟୁରୁ
ସୁନ୍ଦର ମୋର ଗାଁ ସୁନ୍ଦର ମୋର ଗାଆଁ ।୧।

ହାଣ୍ଡି ଚୁଲୁଥାଏ ଜସର ପସର
ବାଉଁଶ ପତର ଖସର ଖସର
ଟେଁ ଟେଁଇୟାର ଟେଁ ଟେଁ
ଛଅଁଳା ବାଛୁରି ମେଁ ମେଁ
ନଈରେ ଚଳିଛି ନାଆ
ସୁନ୍ଦର ମୋର ଗାଁ, ଏହି ମୋ ପଲ୍ଲୀ ମା’ ।୨।

ମେଘ ବରଷଇ ଝୁପୁରୁ ଝୁପୁରୁ
ବେଙ୍ଗ ନାନୀ ନାଚେ ଫୁରୁରୁ ଫୁରୁରୁ
ଜହ୍ନି ଫୁଲର ଠୋ ଠା କାକୁଡ଼ି ଫୁଲର ଠୋ ଠା
ଗୁଣ୍ଡୁଚି ମୂଷା କହି ଯାଇଛୁ ଚାଉଳ ମୁଠିଏ ଥୋଇ ଆ
ଏହି ମୋ ପଲ୍ଲୀ ମା’ ଏହି ମୋ ପଲ୍ଲୀ ଗାଁ ।୩।



## ।। ୩୪ ।।

ବାପ ଘର ଝିଅ ସୁନା ଗୁଙ୍ଗୁଡ଼ିଆ
ଶ୍ୱଶୁର ଘରକୁ ଲୁହା
ବଡ଼ ଅପନା ସେ ଘର କରଣା ମା'
ଲୁହ ଲହୁ କେତେ ଥୁଆ ।୦।

ପର ମନ ଜାଣି ଖଣ୍ଡାଧାରେ ନାଚ
ଚାଲୁଥିବୁ ତୁହି ବାଟ
ଲକ୍ଷେ ଗୁଣ ଥାଇ ଅଳପ ଦୋଷକୁ
ବସଇ କଳଙ୍କ ହାଟ
ଜୀବନରେ କୁଆ ଖେଳ ଏ
ମନେ ରଖ ମା'
ସଂସାର ସାଗରେ ଉଜ୍ଜ୍ୱଳ ଥରେ ଦେଖ ମା' ।୧।

ନୀତି ପାଳ ହୁଅ ସୁନୀତି ତୋର ବଢୁ ଆୟୁଷ
ସୁଖି ହୁଅ ନବ ଦମ୍ପତି
ଦେଉ ମୋର ଆଶିଷ
ହୁଅ ଚିର ବରଣୀୟ ରମଣୀୟ ମହନୀୟ
ଯୁଗ ଇତିହାସେ ଥାଉ କଥା
ଯଥା ଶ୍ରବଣସ୍ୟମନ୍ଦଦୋଷୀ
ରାମ ସଙ୍ଗେ ଯଥା ସତୀ ସୀତା
ଯୁଗଳ ଜୀବନ ମନ ନୀର ଖିରର ମିଳନ
ତରୁବର ସଂଗେ ହସେ ଲତା ।୨।



## ॥ ୩୫ ॥

ମାଟି ମାଆ ଅଙ୍ଗନେ ସୁନା ଧାନ ଲୋଟେ
ଜଳେ ମଣି ଦୀପାଳି ସ୍ୱର୍ଣ୍ଣ ଫୁଲ ଫୁଟେ ।୦।

ଶରତେ ମୋ ମାଆ ଗଳେ ସଜ କଇଁ ହାର
ଶିଶିରେ କୃଷକ ଆଣେ ଶସ୍ୟ ଭାରଭାର
ଶୁଭ୍ର ଶିଖା ଜ୍ୱଳେ ସ୍ୱଚ୍ଛ ନଦୀ ତଟେ ।୧।

ବସନ୍ତେ ମୋ ମା' ପିନ୍ଧେ ବାସନ୍ତୀ ପାଟ
ପ୍ରଭାତି ବନ୍ଦନା ଗାଏ କୁମ୍ଭାଟୁଆ ଭାଟ
ବେଦନାଦେ ମୁଖର ହୋମ ଧୂମ ଉଠେ ।୨।

ମେଘର ଝାଲର ନୋଇଁ ଛୁଇଁ ଯାଏ ଶୈଳ
ହସିଦିଏ ଜନନୀ ମୋ ଶ୍ୟାମ ଶୋଭା ଛଇଳ
ଥରଥର ଝର ଝର ନିର୍ଝରଣୀ ଛୁଟେ ।୩।



## ॥ ୩୭ ॥

ସୁନ୍ଦର ଗୀତ ଗାଇ, ଶ୍ବେତ ଡେଣା ଦୋହଲାଇ
ନେଳିଆ ଆକାଶତଳେ, ଉଡ଼ିଗଲେ ଶାଖିଲେ
ମାଇ ସଂଜ ଗ୍ଧଇଡ଼େଇଁ କୁହୁଡି ପାଚେଣ୍ଟି । ୦ ।

ଲହ ଲହ ହେଁସୁଆଡ
ବଗ ବସି ଧିଆନୁଛି
ଖୋଲିଛି ଝାମ୍ପୁଲି କେଶ
ଖାବରି ଖଳୁଣ୍ଡି ଲୋ
ମେଘଘଇଜରୁ ଉଠେ ଜହ୍ନ ଘଡ଼ି ମାରି । ୧ ।

ମଦ୍ଦର ଆଟଳକ ଛାପ
ଚୁମା ଦେଇଯାଏ ଗାଲେ
ବଥପର ଗୁରୁ ବୋଝ
କଳା ବଣ୍ଟା ବେଣ୍ଡୀ ଝୁଲେ
କାନ୍ଧ ଜାଣେ ଗାଁ ଝୁଅ
ହସେ କଳ କଳ ଲୋ
ନେଳିଆ ଆକାଶ ତଳେ
ଉଡ଼ିଗଲେ ଶାଖି । ୨ ।

ପାନ ବନେ ଓଠ ନାଲି
ଆଖି କଳା ଭଅଁର
ଅନ୍ଧାରେ ରଜନୀ ଗନ୍ଧା
ଝାଡ଼େ ଫୁଲ ଚଅଁର
ମଖମଲି ଛଙ୍କା ରଢ
କଲି ତା'କୁ କାଉଁଣ୍ଠି । ୩ ।



॥ ୩୭ ॥

ମେଘ ବରଷଇ ଝୁପୁରୁ ଝୁପୁରୁ
ବେଙ୍ଗ ଅପାନାଚେ ଫକ୍ରୁରୁ ଫକ୍ରୁରୁ
ଚକ ଚକ ହସେ ବିଜୁଳି କନିଆଁ ସୁମ୍ବ ବନ୍ଧେ ବାଈ
ନଈରେ ଗୁଳିଛୁ ନାଆ ।୦।

ହସି ହସି ନାଚେ ଜଳ ଧାନ ବାଲ
ଉଡ଼ି ଉଡ଼ି ବୁଲେ ବଗ ଶଙ୍ଖଚିଲ
କଆଶରେ ପାଣି ଶିଆଶ ଶିଆଶ
ଝାପସା ଦିଶୁଛି ଗାଁ ।୧।

ଝାଉଁଶିଆ ଖରା ପାଉଁଶିଆ ମେଘ
ବର ଚକୁଳରେ ପିଠା ଖିଆ ପାଗ
ଗାଁ ମଥାନରେ ଧୂଆଁ ଚର ବୁଲେ କାଉ ଡାକେ କା'କା' ।୨।



॥ ୩୮ ॥

ଓମା ମାଆ ମୋ ରାଣୀ
ନଥି ଠାକୁରାଣୀ
ଦଅ ମା ଭକ୍ତ ମାଗୁଛି
ନରମ ପୋଡ଼ଛି
ନଶୀ ଭଣ୍ଡାରରୁ ମିଳୁ
ଅଇ ସୁଲକ୍ଷଣୀ ।୦।

ଓଡ଼ିଆ ଘରର ବନ୍ଧୁ
ଖୁଡରେ ମମତା ମହୁ
ଛେଉଣ୍ଡ ଦଅରକୁ ମା'
ନିଜ ପୁଅ ଦେଲି ଜହ୍ନୁ,
ବାବୁ ଝୁଲେ ହାଣ୍ଡି ଝୁଲେ
କୋଲେ ଧରି ଗୀତ ଗାଉ
ହଳଦୀରେ ହରିତାଳି
କୁଳ ଭୂଆଷୁଣୀ ।୧।

ତୋ କୋଳ ଯାଏ ଆଦରି
ମାଆ ଛେଉଣ୍ଡ ବାଛୁରି
କଣ୍ଠ ପୁଛି ଛୁଆଟିକୁ
ପୁଅଠୁଁ ସରାଗ ଭାରି
ଝାଟି ମାଟି ଘର ଲଗେ
ବୈକୁଣ୍ଠ ପୁର ପରି
ଚନ୍ଦନ ଗାଡରେ ଚୁଆ କସ୍ତୁରୀ ମଣ୍ଡଣି ।୨।

ଭେଣ୍ଡି ଆମ୍ବିଳ ଶାକର
ଶିମ ରାଇତା ମହୁର
କଖାରୁଆ ମହୁରାଳି
ଅମ୍ବୁଲ କୋଳି ଆଚୁର
ବଡ଼ି ଲେଉଟିଆ ଭଜା
ପରଷଣା ମୋ ମାଆର
ପେଟ ପୁରେ ଭକାଆର ଶୁଣିଲେ ସେ ବାଣୀ ।୩।

●

## ॥ ୩୪ ।

ରଗଡ଼ ମଗଡ଼ ଶଗଡ଼ ଗଡ଼ିଲେ ହୋ
କାଳିଆ କପିଳି ବଳଦ ହଳେ
ଢ ପଦ୍ମଶିଆ ଖରି
ଘଣ୍ଟି ଘାଗୁଡ଼ିର ଝୁମର ଝୁମର
ଶବଦ ଶୁଭୁଛି ପରି ।୧।

ଆମ୍ବ ଧାଡ଼ି ଧାଡ଼ି ପଣସ ଝାଳେଣି
ସଡ଼କର ଦୁଇ ପାଖେ
ରଙ୍ଗ ରଙ୍ଗେଇଣ ସରୁ ସୁଟେଇଛ
ହସି ଦେଇ ଆସି ଡାକେ
ତଳପା ଡହୁଛି ଶରମ ଝାଳେ
ରଗଡ଼ ମଗଡ଼.......... ।୧।

ଉଚ ପିଣ୍ଡା କାନ୍ଥେ ଝୁଣ୍ଟି କେ ଦେଇଛି
ଦୂରକୁ ସୁନ୍ଦର ଦିଶେ
ଲାଜେଇ ଲାଜେଇ ନଇଁ ନଇଁ କଷି
ଭୂଆସୁଣୀ ହସି ଆସେ
ମେଘ ବରଷୁଛି ମାଛ ଗୋଡ଼ ପର
ଧୂଳି ବାଲି ଉଡ଼ୁ ନାହିଁ
ଏ ପାରି ମଥୁରା ସେ ପାରି ଚଉରି
ମଝିରେ ଯମୁନା ନଈ
ରାଧିକା କାନ୍ଦୁଛି ରାନ୍ଧଣା ଶାଳେ
ରଗଡ଼ ମଗଡ଼.......... ।୨।

ଆଁକୁ ସୁନ୍ଦର ନଡ଼ିଆ ଗଛଟେ
ବାଳକୁ ସୁନ୍ଦର କଥା
ନେଉଟିଆ ଶାଗ କଆଁଶି ପାଖେ ଟେ
ଝାଏ ସେ ହୋଇଛି ଠିଆ
ଶାଳ ଖମାଣରୁ ମୟୂର କୁହାଟେ
ବରଷା ଆସୁଛି ମାଡ଼ି
ରାମ କାନ୍ଦୁଛନ୍ତି ଭାଇ ଲକ୍ଷ୍ମଣ ମୋ
ସୀତାମ୍ମା ଯାଇଛି ଛାଡ଼ି
ଝଗଡ଼ ମଗଡ଼......... । ୩ ।



॥ ୪୦ ॥

ରଙ୍ଗିଲା ଫଗୁଣ ପୁନେଇ ଆସିଲା
ନାଲି ଅବିର ହାତେ ଧରି ।
ପଲାଶର ରଙ୍ଗ ଦୀପାଳି ଜାଳିଲା
କଅଁଳିଲା ବଣ ବଲ୍ଲରୀ
ମାଗିଲା ବିଗଙ୍ଗନା ବାରେ ପରଶ
କାମିନୀର କାମ ଶାସ୍ତ୍ରକୁ ଯୋଡ଼ିଲା
ବିବଶ ହୋଇଲା ବରଷ । ୦ ।
ମଧୁକାଳ ବୋଲି ଚହ୍ଲାଇ ଦେଉଛି
କୋଇଲି ବଧୂ ଡ଼ାକେ କୁହୁ
ସୁଲୁ ସୁଲୁ କରି ଦକ୍ଷିଣା ପବନ
ବରଷି ଯାଉଛି 'କ' ମହୁ
ମାଗିଲା ଉପବନେ ଗୁରୁ ଲତିକା
ନୀରବ ଥିଲା ସେ ମୂକ କବି ଏବେ
ଗାଉଛି ମିଳନ ଗୀତିକା । ୧ ।

ହୋରି ଖେଳ ଗୁଲେ ଶ୍ୟାମ ରାଭଙ୍କର
ବୃନ୍ଦାବନ ସ୍ମୃତି ଜଗାଇ
ଗୋଲାପୀ ସୁଷମା 'ଯୁବତୀ ଅନ୍ତରେ
ଫଗୁଆ ଅବିର ଲଗାଇ
ଡ଼ାକିଲା ଯଉବନେ ଯଉବନକୁ
ଯାଚହୋଇ କଥା କହେକେ ଛଇଳା
ଅନାଇ ଶୂନ୍ୟ ଗଗନକୁ । ୨ ।
ଗୁଲି ଯିବ କହେ ସତେ ମଧୁମାସ
ମଧୁ ଆସ୍ୱାଦ ଖାଲି ଦେଇ
ପ୍ରାଣ ଭରି ମଧୁ ଗୁଖିବା ବେଳକୁ
ସବୁ ଦୁଃଖକୁ ଯିବ ନେଇ
ସତେକି ପୁଣି ବନ୍ଧୁ ଫେରି ଅସିବ
ଅନ୍ତରର ଯେତେ ଦୁଃଖ ଗ୍ଲାନ ଭୁଷା
ପରଶି ସବୁକୁ ନାଶିବ ।

॥ ୪୧ ॥

ଶା ଶାଗୁଆ ଆଶାରେ ମଳୟା ବଉଦ
ନାଗୁଆ ସୁରୁକେ ଛାଙ୍କିଲା ଲୋ
ଛଣ ଛଟକଣୀ ହଳଦୀ ଲଗାଇ
ଭଉଁର ଚୋକାକୁ ଡାକିଲା ଲୋ
ଆମୋ ଘରୁ ଚୂପି ବାହାଶ ବତୁରି ବାଆ ଡାକେ
ସଂଜୁଲି ଧୂଆଁ ମୁକୁଟ ବାଧେ କଇଁଥ ଚେଛ ସାଥେ
ପିରୁକ ଗୁଲ ଯାଅନା ଜମା
ଯେ ଗଲା ସେ ତେଣେ ଲୁଚିଲା ଲୋ ।୧।

ରଥ ଯାତରା ଯାଉଛୁ ଚାଲ
ଲଗନ ଟେଠି କାହିଁ
ବଗ ବଗୁଲି ତେଣା ହଲେଇ
କହଲେ ନାହିଁ ନ ହିଁ
ନୂଅ କଉଡ଼ି ନୁଆଁର ଗଲା
ଅପାର କରମ ବାଙ୍କିଲା ଲୋ ।୨।

ପହିଲ ରଜେ ପହିଲ ଦେଖା
ଝୁଲଣା ଦୋଳି ପାଖେ
ହେଲୁ ଦନୁ ମୋ ପିଅସୀ ଆଖି
ତା ରୂପ ମଧୁ ଚୁଷେ
ମଧୂ ମାଳତୀର ଆଉଢ ଛାଡ଼ି
କେତକୀ ପାଶେ ଗଲା ସେ ଉଡ଼ି
ଶେଷେ ସେ ତାକୁ ଫାଙ୍କିଲା ଲୋ ।୩।



## || ୪୭ ||

ସେପାଖେ ହଳଦୀ କ୍ଷେତ
ଗମ୍ଭୀର ବିଲରେ କଇଁ
ଲୁଡ଼ିଯାଏ ଗେଣ୍ଡାଳିଆ
ଜଳାମେଘ ଆସେ ନଇଁ
ପାଣିର ପଞ୍ଜୁରୀ ଠେଲି
ମାଛରଙ୍କା ବୁଡ଼ିଯାଏ
ଝାଉଁବଣ ଗୀତଗାଏ
ମରୁଭୂମୀ ମନ୍ତୁପିଇ |୦|

ସାରୁ ପତର ପେଡ଼ିରେ
ବେଙ୍ଗ ନାନୀ ଶୋଇଛି
ପରିହାସ ପବନରେ
ଆଖି ବୁଜି ଯାଉଛି
ବଉଦ ପାଲିଙ୍କି ଚଢ଼ି
ସ୍ୱେପାରିକି ଯିବା ପାଇଁ |୧.

ନାଗଫେଣୀ ଝିଙ୍କି ପାଖେ
ସିଦ୍ଧ ଠାକୁରାଣୀ ପୀଠ
ତ୍ରିଶୂ ଦେଖି ଘଷି ହସି ଦିଏ
ନାଲି ପାନ ଖିଆ ଓଠ
ମଠ ଗୁଲି ବାଲି ବାଟ
ଭଗ୍ନ କୁମ୍ଭ ଦୂର ନଈ |୨|

॥ ୪୩ ॥

ସଞ୍ଜ ହୋଇଯାଉଚ୍ଛି ଦେଖୁଚ୍ଛି ମୁଁ ଚାହିଁଚ୍ଛି
ଘର ଭଲ ଅଡଭଲ
ମନ ଲାଗି ଯାଉଚ୍ଛି
ଦୁଧ ଅଲତାରେ କଏ, କୋଟି କମ କରୁଚ୍ଛି
ଦୂରୁ ପାହାଡ଼ ଚୂଡ଼ା ମୁଣ୍ଡ ଟେକ ଦେଖୁଚ୍ଛି ।୧।

ନୀଳ କହିଁ ଘୂମେଇଲା
ପଥରର ଗୁଡରେ
ଗୀତ ଗାଏ ବୁଲା ପକ୍ଷୀ
ଝାଉଁ ବନ ସାଥିରେ
କୁହୁଡ଼ ପାହାଡ଼ ଭାଙ୍ଗି
ଧୂଆଁ ଗାର କାଟୁଚ୍ଛି ।୨।

ଅଲେଇଚ ଦ୍ୱିପବୁକ ଏ ପବନ ଆସିଲା
ଯୁଇ ବାସ ଗୋଟିଏ କର
ଅଡ ବେଣି ବାସିଲା
ଶାଳବଣ ସାଗରରେ
ଅନ୍ଧାରର ଲହରୀ
ଚନ୍ଦର ମଲ୍ଲିକା ମାଡ
ଜହ୍ନ ଆସେ ପହଁରି
ତାରାର ରୂପେଲି ଫୁଲ ଝରି ଝରି ପଡ଼ୁଚ୍ଛି ।୩।



## ॥ ୪୪ ॥

ହାଡ଼ ଭଂଗା ଶୀତଗୁଡ଼େ ମକର ପରଶ ପାଇ
ଚକରେ ଚକରେ ଦନ ବଢ଼ିଲ ଲଗନ ଛୁଇଁ
ଗାଁ ମୁଣ୍ଡ ଗୋହିରିରେ ଲଣ୍ଡା ପଳାଶ ମାତେ
କଅଁଳିଲ ନାଲିଫୁଲ ଦୂରୁଁ କେତେ ବକାଣେ
କାଉଁଶିକେ ଗୁଟିଲ ବିଲଖାଲ କ୍ଷେତରେ
ହଳଦିଆ ନାଲିଫୁଲ ଧରି ଟଗି ବୁକେରେ
ଦକ୍ଷିଣା ବାଆ ଆଣେଇ କି ମାଦକ ଦୁହାଇ (୧)

ଗଭିଖୋଲି ସଜବଣୀ ପିନ୍ଧେ ଫୁଲ ଗଜରା
ଆମ୍ବ ବଉଳ ହାଟରେ ଗାଏ ଗୀତ ଭ୍ରମରା
କଣଲଷ୍ଟୁ ଉଠେ ଚେଇଁ ମକର ପରଶ ପାଇ
କୁହୁ କୁହୁ ବହେ ନଈ
କୁଟିଳ ପବନ ଖାଇ
ବସନ୍ତ ବାହାର ରଚେ ଫୁଲ ଗୁମର ଦାଇ (୨)



|| ୪୫ ||

ହାବୁକା ହାବୁକା ପବନ ଜଗୁଡ଼େ
ମେଘ ଝରେ ଝର ଝର
ଘଡ଼ ଘଡ଼ ଘଡ଼ ଚଡ଼ ଚଡ଼ି ମାରେ
ଝୁଲେ ଛାଟି ଝାଟି ଘର ।୦।

ଗାଁର ଲିଭିଛି ବତୀ
ଭୀଷଣ ଅନ୍ଧାର ରାତି
ବେଙ୍ଗ ହୁଳ ହୁଳି କେଁ-କଠ କଠ
ଝିଟିପୋକ ଫର ଫର
ଝୁଲେ ଛାଟି-ଝାଟି ଘର ।୧।

ଚବ ଚଦ ଚବ ଘୋ-ଘୋ-ଘୋ
ହୁଡ଼ ଡେଇଁ ଗଲେ ପାଣି
ଶିରିବଣୀ ଧାରା ସୁ-ସୁ ଛୁଟେ
ଦାଗ ହେଉ ନାହିଁ ଜାଣି
ଖାଁ ଖାଁ ଲାଗେ ଗାଁ
ଝୁଙ୍କି ଝୁଙ୍କି ଗଲେ ଆଗରୁ ଟିକିଏ
ପବନ ମାରେ ଫେରାଣି,
ଦାଗ ହେଉ ନାହିଁ ଜାଣି ।୨।

ରାତି ଦଶ ଘଡ଼ି ବାଲୁଆର ଫେଉ
ଚିତା ବାଘ ଦାଏ ରଡ଼ି
ତୀ ଫଁ-ଫଁ ଭୂଇଁ ଦୁଲୁ ଦୁଲୁ
ପାହାଡ଼ ପଡ଼େକି ଝଡ଼ି
କିଏ ସେ ଚାଲିଛି ଏକା
ଗୁଡ଼ରେ ନାହିଁକି ଦେକା
ମଶାଣି ପଦାରେ ଯୁଇ ଜୁଳୁ ଜୁଳୁ
ରଣା ହୁଏ ମୋଡ଼ି ମାଡ଼ି
ଚିତା ବାଘଦାଏ ରଡ଼ି ।୩।

ପରଘରେ ଅଙ୍କା ବନ୍ଧନୀ ପ୍ରିୟା
ସମାଜ ଦେଉଛୁ ଫାଙ୍କି
ଯେତେ ବୁଝାଉଛୁ ଅବୁଝା ମନକୁ
ତେବେବି ପାରନ ରୋକ

ଝୁଲୁଛୁ ତରୁଣ ଏକା
ମରଣକୁ ନାହିଁ ଶଙ୍କା
ଥମିଗଲା ପାଦ ଯେଉଁଠି ତା ପ୍ରିୟା
ଲୁହରେ ଭିଜାଏ ଆଖି
ତାକୁ ସମାଜ ଦେଉଛୁ ଫାଙ୍କି ।୪।



॥ ୧ ॥

ଅନ୍ଧାର ରାତି, ଝିଲ୍ଲୀର ଡାକ
ଦୂରୁ ଆସୁଥିଲା ଭାସି
ପଲ୍ଲୀ ନୀରବ ନିଦ୍ରା ମଗନ
ତୁମେ ଡାକଦେଲ ଆସି ।୦।

ତରାର ସଳିତା ଅଧା ଅଧି ଜଳୁଥିଲା
ଅଧରାତିଠାରେ ଅଧା ନିଦ ଭାଙ୍ଗି ଗଲା
ଚକ୍ଷୁ ଫୁଲ ମୋର ହୋଇ ନଥିଲା ଗୋ ବାସି ।[illegible]।

ଥର ଥର ପାଦେ ଚାଲୁଥିଲ ଡରି ଡରି
ରାତିର କାକର ପଡୁଥିଲା ଝରି ଝରି
ମୋ ହାତକୁ ତୁମେ ଚିପି ଦେଉଥିଲ ହସି ।୨।

ନୟନ କଲପା' ବାର ବାର ଦେହ ଛୁଇଁ
ଏ ଜୀବନେ ମୋତେ
କେବେ ଭୁଲିଯିବ ନାହିଁ
ଆଶାପଥ ଚାହିଁ
କେତେ ମୁଁ ରହିବ ବସି ।୩।

॥ ୭ ॥

ଆ-ଆ-ଶୃଙ୍ଗରଣୀ
ସନ୍ଧ୍ୟା ଅନ୍ଧାରେ
ବନ୍ଦାପନା ହେବ ଲୋ
ଲୋତକ ଧାରେ ।୦।

କମଳିନୀ ମଳି ହରାଇ ତା କାନ୍ତ
ଫୁଲ ମୁଖ ଚୁମି କାନନେ ବସନ୍ତ
ଢଗ ବୁଡ଼ାତମ
ବଡ଼ଇ ବିଷମ
ଦିଗନ୍ତିକା ବଧୂ ଆସେ
ବଡ଼ ବାଧାରେ ।୨।

ନୀଳନଭ ଘେର କେତେ ତର ଫୁଲ
ବିଷାଦିନୀ କରି, ଅଛୁ ପଥ ଗୁହିଁ
ଚୁମ୍ବନ ସର ବୋଲି ତା ଅଧରେ ।୩।



॥ ୩ ॥

ଓଢଣା ଖୋଲରେ ସଜନି
ଶୋଇଛୁ ଅଳସୀ ଗୃହିଣୀ
ସୁନ୍ଦର ମଧୁର ରଜନୀ
ତା'ର ଅକ୍ଷି ଠାରି ଡାକେ ଗଗନେ
ଫୁଲ ହସି ଦୋଳେ ପବନେ
ପକ୍ଷୀ କଣ୍ଠବନ ହେଉନ ।୧।

ସାଉଁଳି ଓଠ ଫାଙ୍କେ ଅଳପ ହସିଦେ
ମଳିନ ଦୀପାଳି ସଳିତା ଜାଳିଦେ
ଧୀର ବଚନ କୁହ ମୋ ଧନଟି ପରି
କାଲି ନୂପୁରୀ ଠୋକି କହିବେ ଟାପରି
ସୁନା କଣ୍ଠ ଛୁଇଁ ଶୋଇଛି ଜଗତ
ଚକୋରୀ ମାଗୁଛି ମେଲଣି ।୨।

ଦୀପାଳି ପାଶେ ବନ୍ଧୁ
ନମସ୍କାର କରଗୋ
ସାରା ଜୀବନ ସାଥୀ ହୋଇବ ମୋର ଗୋ
ବିବାହ ବେଦୀପରେ ଶପଥ କରୁଛୁ
ମାନସ ରାଣୀରୂପେ ତୁମକୁ ବରୁଛୁ
ଜୀବନ ଦିଆ ନିଆ
ମଧୁର ମିଳନ ସରଣୀ ।୨।

ଆଜି ମୋ ଜୀବନର ମଧୁର ଚଇତ
ଫିକା ଦିଶେ ଆକାଶ ହେଲାଣି ପାହାନ୍ତ
କୁଆଁରୀ କନିଆଁର ବରତ ଭାଙ୍ଗିଲା
ବିକାଶ ଡାକେ ଅଜି ତରୁଣ ଜାଗିଲା
କୁକୁଟ କୋଇଲି ରାବିଲେଣି ଶୁଣି
ଗୁଲ ଫୁଲ ଶେଯେ ମୋ ରାଣୀ ।୩।

●

## ॥ ୪ ॥

କାନ୍ଦି ଘୁରିବୁଲେ ବିଫଳ ବାସନା
ନିରାଶ ଜୀବନେ ସଂଜ ଆସେ ଘେରି
ପୋଛୁ ନାହିଁ କେହି ବେଦନାର ଧାର
ଶୁଖି ଶୁଖି ଆଖି କୋଣେ ଗଲା ମରି ।୧।

ନଭ ନଭ ଆସେ ଜୀବନ ସଳିତା
ସୋହାଗ ନପାଇ ମରେ ମୋ କବିତା
ଚଲା ପଥେ ମୋର ଲୁହା କଣ୍ଟା ଥୁଆ
ଅତୀତର ସ୍ମୃତି ବୁଲେ ହାତ ଧରି ।୨।

ଯାଚି ଦେଲି ଯାରେ ରୂପରସ ବାସ
ଫେରି ଦେଲା ମୋତେ କାଳକୂଟ ବିଷ
ତମସା ରଜନୀ ବେଳା ଭୂଇଁ ତୀରେ
ଶୂନ୍ୟ ଥାଳି ଧରି ବୁଲୁଛି ଭିକାରୀ ।୩।

ହସ ଫୁଲଟିଏ ରଖିବାକୁ ତୋଳି
ଯୁଗ ଯୁଗ ପାତି ରଖୁଛି ଅଞ୍ଜଳି
ଦେଇ ନାହିଁ କେହି ଦାନ ଯାଏ ବହି
ଆସିଥିଲି ଏକା ଯାଉଛି ମୁଁ ଫେରି ।୪।

## ।। ୫ ।।

ଛିଇଲ ରିଦ୍ଧମୀ ରିତୁ
ଆସ ଫୁଲ୍ ଶେଯେ ସପନ ସାଥି ।
ହାରି ଫୁଲ୍ ଝରି କାକର ବନ୍ଧୁରି
ଅପସରି ସୀତାର ବନବାସ ଭରି
ଆସ ଜୀବନର ଶୋକତାପ ହରି
ଜହ୍ନ ଝରଣାରୁ ପିଇ ସୁଧା ଧାରି
ବିରହ ତାଡରେ ଶୋଇଛି ରଜନୀ
ଜୋଛନା ଜୁଆର ଯାଇଛି ମାଡି । ୧ ।

ନିଶବଦ ପକ୍ଷୀ ଗାଉଛି ଝିଙ୍କାରୀ
ବନ ଗୁଛତଳେ ବାହୁନେ ମୂରଲୀ
ଚନ୍ଦ୍ର ମୁକୁର ଉଠୁଛି ଚହଲି
ଜୁଲୁ ଜୁଲୁ ଜଳେ ତାରକା ଦୀପାଳି
ରିଉଁସି ପବନେ ଛୁଇଁଲା କାଉଁରୀ
ପରଶ ମାଗଇ ରସାଳ ଗୁଡ । ୨ ।



॥ ୭ ॥

ଜୀବନ ନଦୀର ଦୁଇ କୂଳେ ନାଚେ
ବିରହ ମିଳନ-ସ୍ମୃତି
ଏ କୂଳେ ନାଚଇ ମରୁ ମରୀଚିକା
ସେ କୂଳେ ମିଳନ ପ୍ରୀତି ।୧।

ଯାଏ ଆସେ ମୋର ମନ ତରଣୀ
ଲହର ଜୁଆର ବହେ ଉଜାଣି
ଜନମ ମରଣ କାଳ ସ୍ରୋତ ବହେ
ଶୂନ୍ୟ ଘଟେ ନିତି ନିତି । ।୨।

ଏ କୂଳେ ଲିହୁଥି ସେ କୂଳେ ଢାଳଇ
ମିଳନର ମଣି ଦୀପ
ସେ କୂଳେ ଲିହୁଥି ଗରଜି ତରଙ୍ଗ
ଲିଭାଏ ମମତା ଧୂପ
ଗୁଇ-ଅନ୍ଧାରର ଲୁଚକାଳି ଖେଳେ
ନଖିଳ ବିଶ୍ୱେ ପ୍ରତି ପଳେ ପଳେ
ସୁଖେ ଦୁଃଖେ ବାଜେ ମରମେ ମରମେ
ଜାଗରଣ ମହାଗୀତି । ।୩।

॥ ୭ ॥

ଗ୍ର ସଳିତା ଜଳେ, ଝାଉଁ ବନ ଗୀତ ଗାଏ
ଉପବାସୀ ମନମୋର, କାହା ଲାଗି ଝୁରୁ ଥାଏ ।୦।

ବନାନ୍ତକା ଛାଇତଳେ, ଅନ୍ଧାର ଜମିଲା ଧୀରେ
ବସନ୍ତ ସଞ୍ଚର ମୋହ, ଦକ୍ଷିଣା ପବନେ ଖେଳେ
ମରୁରେ ମାଳତୀ ଫୁଟି, ବାସନାର ବକ୍ଷ ଛୁଏଁ । ୧ ।

ନୀଳାଞ୍ଜନ ଘେରା ନଶି, ପ୍ରଫୁଲ୍ଲ କୁସୁମ ବନ
ଅମାବାସ୍ୟା କଉ ପୁଟେ, ହସଇ ଦ୍ୱିତୀୟା ଜହ୍ନ
(ଏ) ପୁରୁଣା ନୀଳ ଗଗନ, ନବ ନୂଆ ରୂପ ନିଏ । ୨ ।

ମୁକୁତା ପୋହଳା ଦ୍ୱୀପେ, ଯେଉଁ ରଜାପୁଅ ଅଛୁ
(ମୋ) ମଂଜରିତ ମନତଳେ, ଅମୃତ ରଖିଛ ସଞ୍ଚି
ରକତେ ଆରକ୍ତ ଲାଜ, ବଂଧୁ ପଥ ନବ ଗୃହେଁ । ୩



॥ ୮ ॥

ତରୁଣୀ ତରୁ ବୃହିତ ହଂସ ଗତି ହସି ହସେ
ଫୁଲ ମହୁ ଭୃଙ୍ଗ ପିଇ ଭଅଁରଟା ଗୀତ ଗାଏ ।୦।

ଧରଣୀ ଅଧରୁ ଝରେ ମୁଠାମୁଠା ନୀଳ ହସ
ଗେଣ୍ଡୁ ଇ ଫୁଲେଇ ନଈ କରେ ଖାଲି ପରିହାସ
ପବନ କେନ୍ଦରା ବାଜେ ପ୍ରଜାପତି ନାଚଯାଏ । ୧ ।

ଫଗୁଣ ଫଟା ଭୂଇଁରେ ପଳାସର ରଙ୍ଗ ଶୋଭା
ଜୋଛନା ପଠାରେ ଲାଗି କାନ୍ଦୁଛି ଡାହୁକ ଅବା
ଆଖି ଅପହଞ୍ଚ ପଠା ଦୂରେ ଦୂରେ ଡାକେ କିଏ । ୨ ।

ଢେଉର ପାଲଙ୍କି ଚଢ଼ି ଆସିଛନ୍ତି ଯଉବନ
ବିବେକ ବିକାଳି ଆଶା କାମନାର କଣ୍ଢାବଣ
ବସ୍ତ୍ରପର ଫୁଲ ଦୋଳି ବାର ବାର ଉଡ଼ିଯାଏ । ୩ ।

॥ ୯ ।

ତୁମକୁ ମୁଁ ଭଲପାଏଁ, ଅଥ ଭଲ ପାଏଁ
ଲୁଚେ ନା ମୋ ମନକଥା କବିତାରେ ଗାଏଁ । ୦ ।

ଅଜାଣତେ ଆଖି କୋଣୁ ଝରିପଡ଼େ ଲୁହ
ତୁମେ କି ପାଅନା ଭଲ କୁହ ମୋତେ କୁହ
କେଳାର ନାଗୁଣୀ ପରି ଶୁଏ କଳା ରଜନୀ
ମନ ଅଭିମାନ ମୋର କବିତାରେ ମରେନି
ଆଖିର ଶୋଷପାଇଁ ମୁଁ ଯୁଗ ଯୁଗ ବହେଁ । ୧ ।

ଆକାଶରୁ ଝରିପଡ଼େ ଥୋଲା ଥୋଲା କାକର
ବନ ହଂସୀପୁରେ ବସେ ମିଳନର ବାସର
ଘାସ ଗାଲିଚାରେ ଶୋଇ ପାହିଯାଏ ରାତି
ସାପ ଫଣାପରି ଝୁଲେ ଧାନ ପେନ୍ଥି ପେନ୍ଥି
କୁହୁଡ଼ିର ଲହରୀରେ ନଈ ଭାସି ଯାଏ । ୨ ।

କମଳା ଲେମ୍ବୁର ଖରା ହସିଦିଏ ସକାଳେ
ହଳଦିଆ ଫୁଲଝରେ ସୁନାଙ୍କୀ ଗଛମୂଳେ
ମେଘ ବଳଦ୍ଧ ମଝିରେ ଜହ୍ନଯାଏ ମରି
ଝରିଯାଏ ସକାଳର ସବୁ ସବୁ ଜହ୍ନି
ଖେଳାବାଡ଼ି ସେପାଖରେ ମେଘ ଝରୁଥାଏ
ଲୁଚେନା ମୋ ମନକଥା କବିତାରେ ଗାଏଁ । ୩ ।



|| ୧୦ ||

ତୁମେ ହସିଦିଅ ଥରେ
ତୁମେ ହସିଦିଅ ଥରେ
ସରସି ସନ୍ଧ୍ୟେ ଘନ ବନ ଭଳି
ହସି ହସି ମୁହିଁ ମରେ ।୧।

ଫଗୁଣର ଫଗୁ ଅଞ୍ଚଳ ଦେଖ
ବନ ଫୁଲ ଉଠେ ଭରି
ରୂପ ଝରଣାରୁ ପ୍ରୀତି ସୁଧାରସ
ଝରି ଝରି ଯାଏ ଝରି
ମାଧବୀ ଯାମିନୀ କାମିନୀ ସ୍ୱପନ
ମିଶିଯାଉ ଅଭିସାରେ ।୨।

ତରୀ ଜଗୁଆଳ ଆକାଶକୁ ଗୁହିଁ
ତୁମେ ପାଶେ ବସ ମୋର
ସୁନା ଫୁଲ ପରି ଚହଲି ଚହଲି
ଭସିଯାଉ ହସ ଝର
ସ୍ୱପ୍ନ ସୀମାନ୍ତେ ଆଶାର ଆଲୋକ
ଦିଶେ ଦୂରେ ଅତି ଦୂରେ ।୩।

ରଙ୍ଗ ରଙ୍ଗରଙ୍ଗ ଶଙ୍ଖଳ ସୀମାନ୍ତେ
ଜଳୁଛନ୍ତି ଦୁଇ ତାରା
ହୃଦୟ ଲହରେ ସେ ଶୋଭା ପହଁରେ
ମନ ସୁରୁ-ରାଇ ଦିଅ କୁ-ରୁ-ରାଇ
ହସି ହସି ମୁହିଁ ମରେ ।୪।

॥ ୧୧ ॥

ଦିଗ ଚକ୍ରବାଳେ ଖୋଜି ଯାଏ ମୋର ସୁର
କେତେ ଦୂରେ ଅଛ ପଥର ଠାକୁର
ସେ ମନ୍ଦିର କେତେ ଦୂର ।୧।

କାମିନୀ ଲତାରେ ଫୁଟିଥିଲା ଯେଉଁ ଫୁଲ
ତୁମେ କିଣିଥିଲ ଦେଇ ଜୀବନର ମୂଲ
ଚରଣେ ଦଳିଛ ଘାତକ ସମାନ
ସରାଗ ପାଖୁଡ଼ା ତାର,
କେତେ ଦୂରେ ଶ୍ୟାମ ଡାକେ ପ୍ରେମ ସୁଧା
ସେ ଦେଉଳ କେତେ ଦୂର ।୨।

ସନ୍ତାନ ଲଗି ନାରୀ ହୁଏ ଭାଗ୍ୟବନ୍ତ
ସେଇ ସନ୍ତାନ କରିଛ ତାକୁ ଅଶାନ୍ତ,
ସରଳତା! ମୁଖେ ଗରଳ ଦେଇଛ
ଲୋତକ ଝୋଇଛ ଧାର,
ସ୍ୱଚ୍ଛ ପ୍ରେମ କିଆଁ ମିଛ ହୋଇଯାଏ
କୁହ ଶ୍ୟାମ ବଂଧୁ ମୋର ।୩।

ପୀରତି ସାଧିକା, ରାଧିକା କାନ୍ଦନ୍ତିରେ
ଦୁଃଖିନୀର ଦୁଃଖ କେହି ନ ବୁଝିଲେ ଥରେ
ସମାଜ ଶାସନେ ସରଳା ଅବଳା
ଅନୁତାପେ ଜଳି ମରେ
ମରୁ ବାଲୁଝଡ଼ କାଳ ବଇଶାଖୀ
ଧ୍ୱଂସର ରୂପ ଧରେ ।୪।

●

## ॥ ୧୨ ॥

ଫେଲ ଯଦି ତୁମେ ଚେନିଲ ନାହିଁତ ମୋ ପରମ ଉପହାର
ଋଣୀ କଲ ମୋତେ ଜାଣି ଶୁଣି ସିନା କ୍ଷୀରେ ମିଶାଇଲ ଖାର ।୧।

ମାଳା ଦେଇ ଗଲେ ଦେଲ ନାହିଁ ଜମା ମନ
ଥାଳା! ହାତେ ମୁହିଁ ଭୁଲେ ନିଖିଳ ଭୁବନ ।
ବଳ ନାହିଁ ମୋର ଛଳ ସହି ଆଉ ବିରଚିବ ଅଳଙ୍କାର ।୨।

ଶଶଧର ପାଶେ ଶଶା ଯାଇଥିଲା ମର୍ତ୍ତ୍ୟ ପଥର ପାଇ
ଆଲୋକ ସାଗରେ ବୁଡ଼ି ଗଲା କାହୁଁ କେହି ଜାଣିଲା ନାହିଁ
ପୀରତି ନଦେଇ ଦେଖାଇଲ ଖାଲି ରୂପ
ବାରି ଝରେ ନାହିଁ ପଥପାଶେ ବାଲି କୂପ
ଯେତେ ପାର ତୁମେ ଭାଙ୍ଗି ଚୂରି ହଅ ଗଢ଼ିବି ମୁଁ ନୂଆ ଘର ।୩।



॥ ୧୩ ॥

ଧୀରେ ବାଜୁଛି ମୁରଲୀ ତାନେ,
ଆସ ମାନସରାଣୀ ମୋ ପାଶେ
ମଧୁ ବସନ୍ତ କାଳ
ହସେ ମଲ୍ଲୀ ମୁକୁଳ ।୦।

ନୁଆ କୁଆଁରୀ କଇଁ ବୁକେ
ପରଶ ଜାଗେ-ସରାଗେ
(ତାର) ଚନ୍ଦର ଉଦଆକର ପରଶ ମାଗେ ସରାଗେ
ଇନ୍ଦ୍ରନୀଳ ଦଆଳୀ
ଜହ୍ନ ଜାଲ ରୁପେଲୀ
ପେନ୍ଥି ବଉଳଟରେ ପତର ଫାଙ୍କେ ।୧।

ମାନ ମହତ ଦୂରବେଣୁ
ତମାଳ କୁଞ୍ଜେ ଗାଇଲା
କେଉଁ କାଉଁରୀକାଠି ଛୁଇଁ
ହେମହରଣୀ ଗୁହିଁଲା
ଆଖି ମିନତି ଭରା
ମନସରାଗ ମରା
ଏକେ ପିଆସା ଜାଗେ ନହୁଲୀ ବୁକେ ।୨।



## ।। ୧୪ ।।

ଧୂସର ସନ୍ଧ୍ୟା ଧୂଳି ଧରଣୀରେ ନଇଁଲା
ଧୂମ୍ର ପଟଳରେ ଗଗନ ମଗନ
ସଘନ କାଳିମା ଛାଇଲା ।୧।

ସରି ସରି ଆସେ ଦିବସ ଆଲୋକ
ଲଭି ଲଭି ଯାଏ ଆଶାର ପୁଲକ
ତରୁଶାଖେ ବସି ସାଥୀହରା ପକ୍ଷୀ
ଲୁବ୍ଧ ଝଙ୍ଗ ଗୀତ ଗାଇଲା ।୨।

ରୁକ୍ଷ ଦିଗନ୍ତ ବକ୍ଷ ବିଦାରି
ନିଶାଦ ବଇଁଶୀ କାନ୍ଦେ ଥର ଥର
ମରଣର ମରୁ ମରୀଚିକା ଓରେ
ଅନ୍ତିମର ଛାଇ ଶୋଇଲା ।୩।



## ॥ ୧୪ ॥

ନାଇଁ ଆସେ ଗ୍ଳାଇ ବନ ବୀଥି ତଳେ
ଫେରି ଆସ ସାଥୀ ଫେରି ଆସ ସାଥୀ ।୧।

ଗଲଦିନୁ ତୋର ବାସୁଁ ସୁଖ ଶିଖା ସଜାଛୁ
ବରତ ମୁଁ କରଛୁ ।
ଦିନ ଗଣି ଗଣି ବଂଧୂ କାନ୍ଦି କାନ୍ଦି ମରଛୁ
ଲୁହ ଧାର ଝରୁଛୁ ।
ବହୁଲଣି ଚଇତାଳି ଗାଇଲଣି କୋଇଲି
ମନ ଉଠେ ମାତି-ମନ ଉଠେ ମାତି ।୨।

ବାସର ରଜନୀ ଶେଷେ କହିଥିଲି ସଗରେ
ମୁଁ ହିଁ କଣା କଙ୍କର ।
ପ୍ରୀତି କୁତୂ କୁଚା ଦେଇ କେଶ ମୋର ସାଉଁଳି
ଜୀବନ ଦୂଆରେ ଭସି ଯାଏ ନାସ୍ତି ଜନମ
ଶେଷ ମଧୁ ରାତି ଶେଷ ମଧୁ ରାତି ।୩।

ଖୋଇଥିଲ ଫୁଲ ଗନ୍ତ ଆଜି ଫୁଲ ଫୁଟିନ୍ତି
କେତେ ଦିନ ପରେ ଗୋ।
ମରିବ ମନ୍ତ୍ରୁ ଖାଇ ନ ପାରିବ ସହି ମୁଁ
ଏ ବିରହ ରାତି-ଏ ବିରହ ରାତି ।୪।

ଫେରି ଆସି ପରବାସୁ ନାଆଁ ଧରି ଡାକିବ
ନଥିବ ମୁଁ କୁଟୀରେ
ଜଳୁଥିବ ଧୂଳି ନଆଁ ଧୂଆଁ ତୋଳି ଆକାଶେ
ଗାଁ ଭୂଇଁ ମାଟିରେ ଗୋ।
ବସି ମୋ ସମାଧି ପାଶେ ଦେବ ଫୁଲ ଅଞ୍ଜଳି
ପାଇବ ମୁଁ ମୁକତି-ପାଇବ ମୁଁ ମୁକତି ।୫।

## ॥ ୧୭ ॥

ପୀରତି ଜ୍ୟୋତି ଅନ୍ଧକାରରୁ
ସଜଳନୟନ ମୋର
ଭଙ୍ଗାବୁକେ ଫୁଟେ ବିରହ କବିତା
ବାଜିଛି ବୁକେ ବଜର ।୧।

ସାଧନାର ପଥେ ଥିଲା ସେ ଆଲୋକ
ନିରେଖି ନୟନେ ଜାଗେ ମୋ ପୁଲକ
ସ୍ୱଜନେ ଭୁଲିଛି ଦାଉସାଧେ ଆଜି
ବରଜି କାମନା ମୋର ।୨।

ନୂଆ ତପନେକି ଭୁଲିଲି
ସରଗ ରୂପ ଗଢ଼ିକର ଦେଖି
ନିଦଭାଙ୍ଗି ଯେବେ ଖୋଲିବ ନୟନ
ଦୀପ ଯାଇଥିବ ଲିଭି
ପୀରତି ବଳାକା ମରମେ ତଳେ
ଧୀରେ ଖସିବୁଲେ ସୁହାଗେ ଛଳେ
ବିଜନେ ବାହୁନେ କାନନେ କପୋତି
ଝଙ୍କାଇ କରୁଣ ସ୍ୱର
ବରଜି କାମନା ମୋର ।୩।



॥ ୧୭ ॥

ଫୁଟିଲା ଯେ ଫୁଲ
ଡାଳି ସଉରଭ—
ଝଳି ଧରା ବୁକୁପରେ
ଅଳପ କାଳର ଗଳପଟା ଲାଗି
କବି କଳପନା କରେ ।୧।

କେତେ ଫୁଲ ଫୁଟି ଲୋଟିଯାଏ କାହିଁ
ତା ମରମ କଥା କେହି ଶୁଣେ ନାହିଁ
ସ୍ମୃତିଟି ତାହାର ରଖିନାହିଁ ବୁକେ ଗାର
ବେଦନାର ଅଶ୍ରୁ ଝରେ ।୨।

ନିମିଷେ ଜୀବନ ଲାଗି ଆକୁଳ ସେ,
କେତେ ଯେ ସାଧନା ତା'ର
ଅଦାନ ତୋଫାନ କରେ ହୃଦମାନ
ଅଜାଡ଼େ ଲୋତକ ଧାର
ମରମ କଥା କହିଲା କେତେ
ଜୀବନ ଲାଗି ଝରିଲା ଯେତେ
(ଖାଲି) ଗାଇଲା କବି ବିଦାୟ ଗୀତ
ମଶାଣି ସମାଧି ପରେ
କବି କଳପନା କରେ ।୩।

॥ ୧୮ ॥

ବକୁଳ ଶେଯ ପାଡ଼ି-ଜାଗିଲି ସାରାରାତ
କାହିଁ ଗଲ ଗୋ ପ୍ରିୟ-ଦୀର୍ଘ ବିରହ ସାଥୀ ।୧।

ସେଦିନ ସେହି କଥା
ରଖିଛ ବୁକେ ଲେଖି
ନୟନ ଚୁମିଥିଲ
ଯେବେ ମୁଦିଲି ଆଖି
ଝୁରୁ ଝୁରା ମେଘ
ବରଷି ଯାଏ ଧରା
ନିର୍ଜନ ସରଣୀ
ଫାଟେ ନୂତନା ଗୁଢ଼ ।୨।



## ॥ ୧୯ ॥

ବାଧିଲଣି ଦେବ ବିଧାତା ଏ ବନ୍ଧନ କାହିଁକି
କଳଙ୍କର କଳାନାଗ ନୀଳକଣ୍ଠ ଜାଳିଲା
ତନୁମନ ଅଚେତନ ବିଷନିଆଁ ଜାଳିଲା
ଅନ୍ଧକାର ଅନ୍ଧାକାରେ ମିଶିଯିବା ପାଇଁକି ।୦

ଆକାଶର ଗ୍ରହଫାଟେ ଘଡ଼ଘଡ଼ି ଗରଜେ
ନାଚ ନାଚ ଶିରିବଣ ଲୁହଧାର ବରଜେ
ମରଣର ପ୍ରେତରାତି ଆସେଧିରେ ନଇଁକି ।୧।

ଧଳାଧଳା ହସହସି ଯମରାଜା ଆସୁଛି
ସପନର ନୀଳଚେହ୍ର ଆଖିଆଗେ ଦିଶୁଛି
ଗ୍ରହନାଡ଼ ଟିକି ଟିକି ଅପବାଦ ସହିକି ।୨।

ଝରିଫୁଲ ଝରିଯାଏ ସଜକଇଁ ମଉଳେ
ବିକଟାଳ କାଳହସେ ଦାଆଁ କାନ୍ଦେ ଦେଉଳେ
ହାଇମାରେ କଳାରାତ ଗ୍ରହ୍ୟାପଥେ ଗୁହିଁକି ।୩।



"ଆସ ମୋ କୁଟୀରେ ଆସ ଫୁଲ ଶେଯ ପାତି ଉଜାଗର ରାତି ବିତିଯାଏ ମଧୁ ଧାସ
ସଜାଇ ରଖିଛି ମୋ ମନ ବେଦିକା ମନ ଘେନା ଘେନ ପ୍ରୀତି କଣା ବିକା ।
ସୁନା ରଥେ ଆସ ମନର ଠାକୁର ସାଜିନବ ବର ବେଶ ।

—ପ୍ରତି ଦାନ—

॥ ୨୦ ॥

ଗାସ୍ପ ପୀରଢର ଲୁହ-ରଙ୍ଗ-ରୁଆ
ଶୁଖିଛି ନୟନୁ ନୀର
ଝରା ଜୀବନର ଝର
କୁହୁ କୁହୁ ଡାଳି ବାହୁନେ କୋଇଲି
ଜମେ ଉଦାସୀ କାକର

ପଲ୍ଲବ ଥିଲା ଯେ ବଲ୍ଲରୀ ଲତାଟି
କାମନାର କାମକଳା
ପ୍ରୀତି କଥାସ୍ମର ଗୀତର ଶିଆସ୍ମ
ଦୂରେ କାନ୍ଦି ମିଶିଗଲା
ଜଳଇ ପଳାଶ ମଉନେ ଶିଷ୍ଟ
ଫେରି ଯାଇଛି ଭ୍ରମର । ୧ ।

ତସ୍ତ ବଧୂ ଶାଢ଼ୀ ଭସାଏ କୁହୁଡ଼ି
ଆକାଶ କାଚରେ ଦଶେ
ଧବଳ ଧେନୁର କଇଁ ଫୁଲ ଲେଟେ
ପାଶୋରି ଉଷାର ଶେଷେ
ଘାସର କେଶରେ ସୁନ୍ଧା କଣ୍ଟା ପଥେ
ଉଚ୍ଛୁଳେ ଶୋକ ସାଗର । ୨ ।

କଦମ୍ବ ଫୁଲିଆ ଜହ୍ନ ହେଲା ନାଲି
ଢେଇଁଲି ଚେତନା ଲହୁ
ଛଉଳି ଛେଉକା ଦରବୀ ଅଧରୁ
ଝରୁନ ସସ୍ୱଗ ମହୁ
ଲୁହର ଲୁଣିରେ ପ୍ରୀତି ଧାନମରେ
(ଏତ) ଭଲ ପାଇବାର ଫଲ । ୩ ।

॥ ୨୧ ॥

ବେଶ ହୋଇ ନଈ କୂଳେ
ଚାହିଁ ଥିବ ତୁମ ପଥ
ଲମ୍ବିଆ ଖୋସାରେ ଖୋସି ଫୁଲ ମାଳତୀ ।
ଶେଯ ସଜାଇବ ସଖୀ
ମଦୁଁଅ ପାଖୁଡ଼ା ଦେଇ
ନୀପ ନିକୁଞ୍ଜେ କରିବ ପ୍ରୀତି ଆରତି ।୦।

ଖିଲ ଖିଲ ଖୁଆଇବ କର୍ପୂର ବିଡ଼ିଆ ଗୋ
(ମୋ) କଉଡ଼ିକୀ କଳାଚାନ୍ଦ
ଭାବ ବିନୋଦିଆ ଗୋ
ମଳୟ ଅନିଳ ହେଲା ପ୍ରଳୟ ଅନଳ ଗୋ ।
କାଳି ନୂର କରେ ନବ ଯୁବତୀ ମଣି ।୧।

କେତକୀ ଦେହରେ କେତେ ଲେଖିଲଣି ପତର
ଦୋଷ ମୋର ଦଶକୋଟି କରନାହିଁ ଅନ୍ତର
ମଦନ ମହୁଆ ଛୁରି ମାରିବାକୁ ଠେକିଛି
ନିଧୁବନେ ଯାଏ ମଧୁ ମାଧବୀ ଲତା ।୨।

ବୁଡ଼ିଲା ପ୍ରୀତିରେ ପଡ଼ି ଭୁଲିଲି ମୁଁ ପଥ ଗୋ
କଥା ଲଗେ ମନ୍ଦ ଆଉ ନ ରୁଚେ ନବାତ ଗୋ
ତମାଲେ ଦଉଡ଼ି ଦେବି କହେ କବି କେଶବ
ନିବେଦିତ ଶ୍ୟାମ ପଦେ ବିରହ ଗୀତି ।୩।



[ ହେ କୃଷ୍ଣ, ହେ କେଶବ ]

॥ ୨୨ ॥

ମଦିର ମାଧବୀ ରାତି
ଏ ନୟନ ମୋର
ଖୋଜି ବୁଲେ ଖାଲି
ଅଶାନ୍ତ ପାଶୋରା ସାଥୀ ।୧।

ବକୁଳ ନିଆଳୀ ମଧୁ ନିଶ୍ୱାସେ
ବାଂଧିବି ବଂଧୁରେ ପ୍ରେମ ଉଲ୍ଲାସେ
ବାହୁ ବଂଧନ ନହେବ ଛିନ୍ନ
ଦେବ ଯଦି ଥରେ ଛନ୍ଦ ।୨।

ଛଳ ଛଳ ଛାଳି ତରଳ ସୁହାଣୀ
ନୀଳାକାଶେ ଜଟଲ ତାରା
ପଥ ଚାହିଁ ଚାହିଁ ନୀରବ ନୟନେ
ଝରେ ବେଦନାର ଧାରା
ଆସ ପ୍ରିୟତମ ପ୍ରେମ ଗଉରବେ
ଯାପିବା ରଜନୀ ଫୁଲ ସଉରଭେ
ଜାଳି ଦେଇଛି ଅନ୍ଧାରେ ପ୍ରଦୀପ
ଜଗେରଖି ଚାନ୍ଦ ବତୀ
ମଦିର ମାଧବୀ ରାତି ।୩।



|| ୨୩ ||

ନିରମେ କେତେ ଅସହ୍ୟ ବ୍ୟଥା ବାଜେ
ସକମେ ମୁହିଁ ଲୁଚାଇନା ତୁମ ପାଶେ
ଭରମେ ମୁହିଁ ଛୁଡ଼ିଲି କୁଳମାନ
ଛୁଡ଼ିଲି ପଥ ବିପଥ ଖାଲି ଡାକେ | ୦ |

ଜୀବନେ ମୋର ଥିଲା ତ ଉଚ ଆଶା
ଲେଖନୀ ମୁନେ ଫୁଟିଲା ନାହିଁ ଭାଷା
ସେଲାଗି ଆଜ ନୀରବେ ବସି ଝୁରେ
ମଧୁର-ମଣି ମହୁରି ଆଣି ଲୁଷେ | ୧ |

ହୃଦୟ ପୁରେ ବିରାଟ ଗୋପନତା
ଉଛୁଳି ଉଠେ ପ୍ରକାଶ ହେବାଲାଗି
ତୋଳିବ କେବା କବିତା କୋଣାରକ
ପରଶ ଛୁଇଁ ଉଠିବ ସତେ ଜାଗି
ହରାଇ ସବୁ ବସିଛୁ ପଥେ ଏକା
ହଜିଛୁ ଆଶା ସରିଛୁ ମୋର ଲେଖା
ସେ ଲାଗି ଆଜ ନୀରବେ ବସି ଝୁରେ
ପଙ୍କିଳ ପଥେ ଚରଣ ମୋର ଲାଖେ | ୨ |

❁

॥ ୨୪ ॥

ମୋତେ ଡାକୁଛୁ କେଉଁ ବସନ୍ତ ଲୋ ମିତ
ନୂଆ ବଉଳରୁ-ମରମ ବଗିଚ୍ଚ
କୋଇଲି ଗାଉଛୁ ଗୀତ ଲୋ ।୦।

ବାସ ଉଳେ ମୁହିଁ ଯେତେ ଲୁଚୁଥିଛୁ
ସପନ ଗ୍ରାଇଜ କଢ଼ି
ଲୁଚ ରହୁନ ସେ କ ସରମ କଥା
ଧୀରେ ଧୀରେ ଯାଏ ବଢ଼ି
ଉହାଡ଼ରେ ଥରେ ଅନାଇଲେ କାରେ
କ ଲାଗି ଭଲସେ ଚଉଲେ ମିତ ।୧।

ମହୁବଅ ମାଗେ ମଧୁପ ମହୁଆ
କହୁ କେତେ ଗୃହୁକଥା
ଟିକ ଲାଜକୁଳ ପର ମୋ ଝାଉଁଲେ
ସରମେ ମରମେ ଲତା
ଝଞ୍ଜି ଲଗାଇଛୁ ସଂକଳ୍ପ ପବନ
ହରକାଲୁ ନଣ୍ଣ ବନ୍ଧ ଲୋ ମିତ ।୨।

ନାଗ କେଶରର ପାଟ ଛଡ ଟେକ
ଚଳାଏ ବଜସ୍ତୁ ବାଜା
ପୀରଙ୍ଗର ଫାଶ ହାତେ ଧର ଗ୍ଲେ
ମୋ ପାଶେ ମଦନ ରଜା
ଜୀବନ ସହୁଦା ବିନା ମୂଲେ ଯିବ
ଚଉ ହେବ ବିପରୀତ ଲୋ ମିତ ।୩।

॥ ୨୪ ॥

ମୋର ଅଙ୍ଗନେ ମଧୁ ମାସିଆ
ମନ୍କୁଲ ଫଗୁଣେ
ମଧୁମାଳତୀ ମଦୀର ପବନେ ।୦।

ଲୋଟି ଯାଏ ତନୁଲତା
ଫିଟିପଡ଼େ ଫୁଲଗନ୍ଧ
ଚହଟ ଗୁଧନୀ ଗୀତ ମନପୁରେ ଫୁଲ ସନ୍ଧ
ଛଳ ଛଳ ଗୀତ ଚଞ୍ଚଳ ଝରିପଡ଼େ ମହୁଆ ଗୋପନେ
ମଧୁମାଳତୀ.......... ।୧।

ମଧୁପିଆ ମଧୁଲିଟ ଆଜି ମୋର ଅତିଥି ଗୋ
ତରି ମୋ ନୀଳ ପଣତ ଆସନ ଦେବି ପାତି ଗୋ
ଆଖି ପରେ ଆଖି ଥୋଇ ଯାପିବି ମୁଁ ଯାମିନୀ ସ୍ୱପନେ
ମଧୁମାଳତୀ.......... ।୩।

ପ୍ରୀତି କଷଟିରେ କଷି ଚାହିଁବି ମୋ ସାଥୀ କି ଗୋ
ମହୁଲି ମିଠା ସୁଆଦ ଛୁଇଁବ ଗୀତ କି ଗୋ
ସହକାର ଛାଇତଳେ ଅଧାଜହ୍ନ ଲୁଚିବ ମଉନେ
ମଧୁମାଳତୀ.......... ।୪।



॥ ୨୭ ॥

ମୋର ପତର ପାଇ ପରଦେଶିଆ
ପରବାସୁ ନାଗର ଫେରିଆସ
ନାଗର ଫେରିଆସ-ନାଗର ଫେରିଆସ । ।୦।

ବରଷା ଗାଢ ହୃଦେ ବଜ୍ରାଳି ଧୀପ ଜାଳି
ନୟନେ ଲୁହ ଜମେ ନଜ୍ଜଳ ମରେ ଖଳି
ମାଳତୀ ଲତା ଝୁଲେ
କୋଇଲ କୁହୁ ବୋଲେ
ଝୁମୁରୁ ଝୁମ୍ପା ମେଘେ
ମୁକୁତା ଫଳ ଦୋଳେ
ବଦେଳ ବୃନ୍ଦେ ମୋର
ନାଗର ଫେର ଆସ
ଶ୍ରାବଣୀ ଧାଗ୍ର ଝରେ
ନାଗର ଫେର ଆସ
ମାଳତୀ ମଧୁହାସ
ଛଇଲ ଫେରିଆସ
ପର ଦେଶିଆ ଫେରିଆସ ।୧।

ଶରତ ଋତୁ ଆସେ
କାଆଁଶ ଜହ୍ନ ହସେ
ବାସ ଅଜାଡ଼ି ଫୁଟେ
ଜଳଇ ମରମେ ଯୂଇ
ଲଭେନା ମୋର
ଲଭେନା ମୋର ।
ସଜଡ଼ା ଶେଯେ ଶୋଇ
ସପନ ଦେଖେ ଗୁହିଁ
ମିଳନ ମଧୁମାସ
ନଗର ଫେର ଆସ ।୨।

॥ ୨୭ ॥

ଶଶୀ ହସା ରଜନୀ ଉଚ୍ଛୁଳା ଚାନ୍ଦନୀ
କଇଁ ନାଚେ ଚାହିଁ ଆକାଶେ
ମୋ ପ୍ରିୟ ତୁମେ ଆଜି ପରବାସେ ।୦।

ଯଉବନ ଝରି ଯାଏ ଝରା ଫୁଲ ସମ
କୂଳ ଛୁଇଁବାକୁ ସତେ ମୋର ମନ ତମ
ବେଦନାରେ କାନ୍ଦେ ହିୟା..........
ମାନେନା ମନା ମନ ହାୟ.........
ରଜନୀ ଗଂଧା ବାସେ ।୧।

ଜନମ କି ଯିବ ମୋର ଆଶା ପଥ ଚାହିଁ
ବିରହ ପଂକରେ ସତେ ମିଳନ କି ନାହିଁ
ଡାକେ ପ୍ରିୟା କରୁଣ ସ୍ୱରେ
ନୟନେ ଝରେ ମରେ ହାୟ
ଶରତ ପରକାଶେ ।୨।



॥ ୨୮ ॥

ସୁଖ ସଙ୍ଖାଳିହେ ଦୁଃଖ ପାସୋରି
କୋପାଇ ରାଇକ ଜପାଇବ କୃଷ୍ଣ
ଝଗଇ ଲେଡକ ଅସରି ।୦।

ବାସୀକଇଁ ପର ରାଇ ହେଉଥିଲି
ଝାଉଁଲେ ଧନକୁ ଧନ
କାହ୍ନର ଚତାକୁ ସାପବୋଲି ଡରେ
ନାହିଁ ତାରଆଉ ଜ୍ଞାନ
ବ୍ରଜବାଟ ହାଟ କପଟ କଗ୍ରୁଟ
ମିଳନକୁ ଶ୍ୟାମଚଳ
କମଳ ଦଳକୁ କର୍‌ବାଲେ କାଟି
ପାଇବକ ଶୁଭଫଳ
ମିତହେତବାଣୀ ଚଉକୁ ନ ନେଇ
କରନ୍ତୁ ତୁମକୁ ମୁଁ ଆଶରି ।୧।

ଧନେପିଉଥିଲ କଶୋଗି ରୂପକୁ
ପିଆସୀ ଚକୋର ପର
ଦୂରୁ ଉଭହୋଇ ଲେଖଲେଖି ଧନ
ଗଲଣିକ ଏବେ ସର
କମନାସ୍ତ କେଲୀ ଝାଲେରଆ ଶ୍ୟାମ
କରନାହିଁ ଆଉଡ଼େର
ଧର୍ଣାସ୍ଥାର ଶଶୀ ପରସେ କଶୋଗି
ଅଲପକେ ଥିବସର
ଗୁରୁମରୁତରେ ସରଗଲେରାଇ
(ତୁମେ) ବୋହୁବ କଲଙ୍କ ପସରି ।୨।

ସୁନା ଲତା ମିନା କଳା ଝିନଶାଢ଼ୀ
ତନୁରେ ରଖ୍ନ ସାଈ
ଗୋଟିଏ କଥା କି ତୁଟିବ୍ନ ଶ୍ୟାମ
କୋଟି କୋଟି ଗାଣ୍ଠଦେଇ
ସବୁ ସରିଲଣି ସରୋଜ ପତର
ବିରହ ତପତ ଜ୍ୱର
ବାଇଦ ଗୁଣିଆ କିକରିବେ କୁହ
ତୁମେ ଏକା ପ୍ରତିକାର
କେଶବ କବିର ନିବେଦନ ଘେନ
ପିରତି ନହେଉ ଧସରା । ।୩।



## ।।୨୯।

ସଞ୍ଜ ଯାଇ ଜୁଈମଲ୍ଲୀ ଦରଆ ମହିରେ ଗୋ
ମୁଁ ମରିବି ତୁମ ପଥ ଚାହିଁ ।
ରକତ ମୋ ପାଣି ଫାଟି ଝାଳ ହୋଇ ମଲାଣି
କଳାଗୁଡ ଆସେ ଫଣା ଟେକି । ୦ ।

ଆଖିପଟରେ ଧକ୍କା ଦିଏ ଶ୍ରେଣୀ ଶ୍ରେଣୀ ଲୁହ ଗୋ
ଲୁହ ଲୁହେଁ ଅଷାଢ଼ର ଭସାଣିଆ ସୁଅ ଗୋ
କୋମଳ କଅଁଳ ପଦେ ନାଲି ନାଲି ଅଳତା
ନ ଦେଖି ମୋ ମରିଯାଏ ମରମର କବିତା
ପରବତ ଖୋଲା ଚୂଡ଼ ଉଚ୍ଚ ଉଚ୍ଚ ଉରଜ
ବାଦଲ ଚଦର ଦିଏ ଢାଙ୍କି । ୧ ।

ରହି ରହି କାନ୍ଦି ଉଠେ ପକ୍ଷୀଟିଏ କେଉଁଠି
ଫଳ ଫେରି ଆସେ ସାଥି ଆସି ନାହିଁ ଲେଉଟି
ଗର୍ବିଣୀ କଳାଗୁଡ ଗର୍ଜନ କରୁଛି
ବିଜୁଳିର କୁଶମାର ମେଘଗୁଡ଼ ଚରୁଛି
ଦୀପ ସଳିତାରେ ଜମେ ପାଉଁଶର ଝୁଲ ଗୋ
ବୁଜି ଆସେ ଶେଷ ଘୁମ ଆଖି । ୨ ।

ବାଘ ଚାଲ ପଟା ପଟା ମେଘଲ ଆକାଶେ
ସର୍ପିଣୀ ବଙ୍କା ବାଟ ଫୁଲ ଫୁଟା ସୋରଟେ
ରସ ଦର ଦର ହସେ କୃଷ୍ଣ ଚୂଡ଼ା କୁସୁମ
ଫୁଲ ହସେ କାନନେ ମୋ ପାଶେ ହସେ ମରମ
ଜୀବନ ଗଣିତ ଖାତା ଶୂନ୍ୟ ମୋ ହୋଇଛି
ଧରଣୀର ଘରଣୀ ନ ଦେଖି । ୩ ।

## ॥ ୩୦ ॥

ହସି ଢଏ ଲଜକୁଣ୍ଠ କଇଁ
ଶିଶୁଶଶୀ ଧୀରେ ନଇଁ ଆସେ
ଫଣାଟେକ ଚରଇ କୁହୁଡ଼ି
ଓଦାମାଟି ଓଦାଦୁବ ଘାସେ ।୦।

କ୍ଲାନ୍ତଶିଶୁ ଆକାଶେ ଶୋଇଛୁ
ଅସଜ ସୁନ୍ଦର ଉପବନ
ନିଦ୍ରାହୀନ ନକ୍ଷତ୍ରର ଶୋଭା
ସ୍ବଚ୍ଛ ଶୁକ୍ଲ ଛାୟାପଥ ପାଶେ
ହସି ହସି ଖସିଯାଏ ଶଶି
ଉଚ୍ଚ ଉଚ୍ଚ ପରବତ ଶିରେ
ଚିତା କୁଟା ଶାମୁକା ସୁନ୍ଦର
ତାଳପତ୍ରା ନଦୀ ବାଲିଗିରେ
ପାଣିର ପଞ୍ଝୁରି ଠେଲିଦେଇ
ନିସଙ୍ଗ ତାରକା ବୁଡ଼ିମରେ
ବଅସର ବୁଦାବାଡ଼ ଭାଙ୍ଗି
ମୁକୁଳ ଆକୁଳ ସୁରଭିରେ
ମୀନ କେତନ କେତନ ଉଡେ
ମନର ମଣିଷ ଡାକେ ଦୂରେ
ଶାନ୍ତବାୟୁ ପ୍ରାନ୍ତରର ଭୂମି
କାଚକେନ୍ଦୁ ସରତରେ ମିଶେ ।୧।

॥ ୧ ॥

ଅଖ୍ରିଗା ଭିକାରୀ, ବୁଲେ ବାର ଦୁଆର ମା'
ଖରା ତାତେ ପାଦ ଥଂରେ ନ ପାରେ ଚାଲି ମା'
ପାପୁଲିରେ ଲୁଣି ଲୁହ, ଜଳେ ପେଟ ଝରେ ଲୁହ

ବେମାରିଆ ଗୋଡ ଅଟେ ଚକ୍ଷି ମେଘ ସୁଆଣି ।୧।
ଘୋଡାରେ ବାଡେଇ ପିଟି ଧନା କହେ କର ପାଟି
ମୋ ଚପଲ ଦାଗ ହେଲେ ମାଡ଼ ଦେବ ଆଜୁର ।୨।



"ଭିକ୍ଷା ? ଅଳସୁଆଙ୍କର ଏ ଗୋଟାଏ ଫନ୍ଦି । ମୂଳ ଧନର ଆଦୌ ଦରକାର ନାହିଁ । ଖାଲି ଗୋଟାଇ ଜାଣିଲେ ହେଲା । ବାଃ, ଚମତ୍କାର ବ୍ୟବସାୟ ।

ପ୍ରଢଦାନ—

॥ ୨ ॥

କା' କା'···ବୋଇଲି ମୁଁ-ତୁ ରାବିଲୁ କୁ କୁ
ପୁଚା   କିଏ ସେ-ରେ ତୁ, ଧନ··କିଏ ସେ-ରେ ତୁ
ଖଣ୍ଡେ ଉଡ଼ା ଦେଇ ତୁ ଡ଼ାଳେ ରାବିଲୁ କୁଉ···କୁଉ ··
ଧନ କିଏ ସେ-ରେ ତୁ   ।୦।

ନାଲିଆ ନାଲିଆ ଅଣ୍ଡାରେ ତୋର, ଅଧାର ଗୁଞ୍ଜି ଦେଲାରେ
ଚତୁର ମାସିଆ ରାଢରେ ତୋତେ କୋଳରେ ଧରି ଥିଲାରେ
ପଡର କୁଠା ଗୋଟେଇ ଆଣି, ବାନ୍ଧିଲି ନୂଆ ବସାରେ
ଗୁଡରେ ଯାକି ଉଷୁମ ଦେଲି, ମନାସି କେତେ ଆଶାରେ
କିଏ ସେ କହ ଆପଣା ତୋର, ପରକି ହେଲି ମୁଁ
ଧନ···କିଏ ସେରେ-ତୁ···   ।୧।

ଗଡ଼ିଆ ବନ୍ଧେ ନଡ଼ିଆ ଧାଡ଼ି, ଚୁଡରି ପଡ଼େ ଗୁଣ୍ଡି-ରେ
ସେଇଠି ଥାଇ କୁଉ-କୁଉ-ରା' ଦେଲକେ କହରେ
ମା'କୁ ତୋର ଯାଉଛୁ ଗୁଡ଼ି କାହାକୁ ଦେଖି କହରେ
ଗୋଡର ବାଗ ଯା'ନା ପୁଅ, ରହ ମୋ ପାଖେ ରହରେ
ଆସୁଛୁ ମାଡି ବରଷା ଝଡ଼, ପବନ ସୁଉ ସୁଉ
ପୁତା·· କିଏ ସେ ରେ ତୁ   ।୨।

ଅଣ୍ଡାରେ ତୋତେ କାମୁଡ଼ି ନେବି, କରିଛୁ କେତେ ଆଶାରେ
ଝୁମ୍ପୁଛି ବୋଲି କହନ୍ତି ଲୋକେ, ହେଉଛି ଲୋକ ହସାରେ
ଦେହରୁ ତୋର ରକତ ଝରେ, ଥକି ଗଲଣି ଡ଼େଣାରେ
ଯାଆନା ପୁତା ଯାଆନା କାହିଁ, ମାନ ମୋର ମନାରେ
ତୋର ପାଇଁ କଲିଜା ମୋର, କାନ୍ଦୁଛି ହୁଉ···ହୁଉ···
ପୁତା···କିଏ ସେ-ରେ ତୁ   ।୩।

॥ ୩ ॥

ଦ୍ରୁମାନର ଗଣ୍ଡି ଖୋଲ ରାଧାରାଣୀ ବାଧାଙ୍ଗି
ହସିଲଣି ପ୍ରଭା ଦଶ ନଶାକର କର ଲାଗି ।୦।

ନେଳନରେ କଲ୍ଲୋଳିନୀ ଯମୁନାର ନୀଳଜଳ
ଇନ୍ଦୀବର ବନ୍ଦିତ ଢ଼ଳ ଢ଼ଳ ଡୋଳା ଛଳ
ଆସରାଳ ପୁନ୍ନାଗର କଶଳୟ ଦେବ ଖୋସି
କରନାହିଁ ଚତୁରତା ନିଶିଶେଷେ ଜାଗି ଜାଗି ।୧।

ଅଧା ଆଖି ଖୋଲି ରାମା ଦରଦର ହଅ ହସି
ଭ୍ରୂଭଙ୍ଗୁରୁ ସରାସନ ମାର ମୋତେ ମଦାଳସି
ନୀପବନୁଁ ଫୁଲବାସ ଘମ ଘମ ଆସେ ଭାସି
ମାନସାର ମାନସରୁ ତୁମଲାଗି ହେଲି ଯୋଗୀ ।୨।

କୁକୁରବ କୁକ୍କୁଟର କଳ୍ପନାକୁ ଦଏ ଦୋଷ
କାକ ପିକ ଡ଼ାକଲେଣି ଫେରିଯିବ ବ୍ରଜପୁଷ
ପ୍ରାତଃଗୀତ ଭଣିଲେଣି କୁମ୍ଭାଟୁଆ ଶୁକ ଶାରି
କେଶବର ସ୍ତୁତି ପରେ ଦଅନାହିଁ ଛୁଟି ଦାରି ।୩।

॥ ୪ ॥

ଗୋଟିଏ ଡାଳରେ ଆମେ ସଭିଏଁ ଚଢ଼େଇରେ
ଏକା'ଠି ବାନ୍ଧିଲେ ବସା କେତେଦିନ ପାଇଁରେ ।୦।

ଆଇଲା ଝଡ଼ ତୋଫାନ, ଭାଙ୍ଗିଗଲା ଡାଳରେ
ମେଘ ଅନ୍ଧାରେ ବାଟ, ଘାଟ ଦିଶୁ ନାହିଁରେ
ଦିନଥିଲ କେତେ ଖେଳ କେତେ କଳି ଡକାଗାଲ
ଭୁଲିଯିବା ଆମ ମନୁଁ ସବୁଦିନ ପାଇଁରେ ।୧।

ଦୁଃଖ ଲାଗି ସୁଖ ଭୁଲି ଦୂରେ ଦୂରେ ଯିବା ଚାଲି
ଅତୀତକୁ ଭୁଲିଯିବା ଗୀତ ଗାଇ ଗାଇରେ
ସତେ ଏ ଝଡ଼ ଦୁଣ୍ଡିବ ମଳୟ ବନ୍ଧନ
ଗଛ କଅଁଳିଲେ ଆମେ
ହେବା ଏକା ଠାଇଁରେ ।୨।



|| ୫ ||

ନର୍ଦ୍ଧମା ପାଖେ ବାର୍‌ ବୁଲ୍‌ ଲେଟେ
ହାଇମାରେ ବସି ବଣିକ
ଶକୁନ ଶାସନ ଅବସାନ କର
ଯୁଗର ଦାବୀ ଏ ଶାସକ ।୦।

ଭୂମସ୍ୱାର୍ଥ କାତର ଲୁବ୍‌ଧ ନୟନ
ଖୋଜି ବୁଲେ ଆମ ଫସଲ
କକୁଆ ଉଦରେ ଭକୁଆ ହେଲୁଣି
ହଟନ ଆମ ବୁଛି ଅକଲ
ଦୁସ୍ଥ ଜନତା ଚତ୍‌କାରେ ଥରେ
ସୁଦୂର ଦଗନ୍ତ ପାହାଡ଼
ଶ୍ଲଥ ଚର୍ମରୁ ରକ୍ତ ଶୁଷିଛି
ଲାଗେ ମୃତ୍ୟୁର ଧହଡ଼
ନକଲି ବୁରୁଖା ତଳେ ଲୁଚି ଛପି
କେତେ ଦିନ ହେବ ମାଲିକ ।୧।

ବଣିକ ମନ୍ତ୍ର ଅମଲା ତନ୍ତ୍ର
ଅବସାନ ବେଳ ଆସିଛି
ମୃତ୍ୟୁ ଶୀତଳ ଅଫିମ ରଜନୀ
ପାହାନ୍ତ ଫରଦ୍ଧ ଦିଶୁଛି
ଶୋଷଣ କାତର ମହାଜ୍ୱର ରୋଗୀ
ଦେଖୁଛି ମରଣ ସ୍ୱପନ
ରକ୍ତ ନିଶାଣ ପ୍ରାଚୀ ଗଗନେ
ଉଇଁ ଆସେ ନବ ତପନ
ବିପ୍ଲବର ରକ୍ତ କାହାଣୀ ଲେଖଇ
ଯୁଗର କବି ଏ ବାଲ୍ମୀକି ।୨।

ଅଶାଂତ ଯୁଗର ବ୍ୟଙ୍ଗ ଅଭିନୟ
କେତେଦିନ ଆଉ କରିବ
ଘେନ ଶପଥ କ୍ଷୁବ୍ଧ ଜନତା
କରିବ ନ ହେଲେ ମରିବ
ଖଣିର ସ୍ୱଣାଳୀ ଟେକିଛୁ ନିର୍ମାଣ
କୃଷକ କୋଦାଳ ଗୁଣ୍ଡିଛୁ
ପ୍ରଗତିର ଘୋଡ଼ା ଚଇତନ ଛୁଟେ
ଝଡ଼ର ଇଗଲ ମାଡ଼ିଛୁ
ମାନି ବୁନ ଆମେ ବାଧ୍ୟତା ଶାସନ
ନିସ୍ତବର ହେବୁଁ ଜନକ ।୬।



## ॥ ୭ ॥

ନୀଦ ଭାଂଗିଦେଇ ଉଠ ମୋ କୁନା ଉଠୁ ମୋ ସୁନାରେ
ଜହ୍ନ ମାମୁଁ ପରା ଡାକୁଛି ତୋତେ ଅନା ଅନାରେ ।୧।

ଅମାନଆଁ ମୋ ଝୁଲଣା ହାଣ୍ଡି ଝୁଲି ଝୁଲରେ
କଆ କେନ୍ଦା ଖାଇ ଝୁମୁର ଗୀତ ଫୁଲି ଫୁଲରେ
ବାଇଆ ଅଛି ଯିବୁନ କେଣେ କରୁଛି ମନାରେ ।୨।

ଘୃର କୋଣିଆ ପୋଖରୀଟିରେ ଫୁଟିଛି କଇଁ
ରଜାର ପାଟ ହାଣ୍ଡି ଘୁଲୁଛି ଘୁଙ୍ଗୁର ନାଇ
ବାଇ ଚଟେଇ ମୋ ଟିକି ଚଢ଼େଇଟି ରୁଷି ଯାଆନା ।୨।

ଶାଶୁ ଘରକୁ ଯିବୁରେ କୁନା ବାଇଦ ବାଜିବ
ବେଂଗୁଲି ନାମି ଓଢଣା ଦେଇ କୁଣ୍ଡଳ ଖଜିବ
ନଇଁ ନଇଁ କା ଟିକି ବହୂ ମୋ ଆସିବ ସିନାରେ ।୩।



॥ ୭ ॥

ନିବିଡ଼ ନୀରବ ନଭ ଝରଝର ବାରି ଝରେ
ପ୍ରବଳ ପବନ ଚଳେ ଥର ଥର ଗୋପଥରେ । ୦ ।

ଜନପଦ ନିଶାବୃତ କୁଟିଳା କାଶୁଛି ଶୋଇ
ଭୁଲାଇଲା ପଥ ଚଳି ରାଇ ନଦେଖିଲେ ଚାହିଁ
କଥା ନ କହୁ ମଥାରେ ଡାକୁଛନ୍ତି ଶ୍ୟାମ ଘନ
ଶିଥିଳ ମାଳତୀ ମାଳ ଓଡ଼ାଣିଲ ଅପଘନ । ୧ ।

ସ୍ମୃତି ନୟନରୁ ବାରି ଝରଝର ଝରନ୍ତରେ
ଅଧ ଅଧରେ ରହିଲା ବାଣୀ
କାନକୁ କାନ ମିଶାଇ ଆସ୍ତେ ଗଣ୍ଠି ପକାଇ
ଶୋଇଛି (ସେ) ଜଟିଳା ନାଗୁଣୀ
ସ୍ନେହ କଣା ବଳା ମନ ମିଳନକୁ ଆକୁଳ
ଜଳାପି ପ୍ରଳାପ ଆସେ ଭାସି
ପ୍ରତି ପ୍ରତିକରେ ଖେଳେ ନୀପ ପରି ପୁଲକ
ନଦେଖି ନବ ଜଳମା ଶଶୀ । ୨ ।

ବାଧା ବଂଧଭାଂଗି ରାଧା ହେଲେ ବାହାର
ମରମେ ଜାଗିଲା ଶ୍ୟାମ ପ୍ରେମ ଜୁଆର
ପଦ୍ମ ପରିମଳ ଯେନ ଅନିଳ ବହେ
ତୃଷା ତୃପ୍ତି ହସା ହସି ମିଶିଲେ ଦୁହେଁ । ୩ ।

ଅମିୟ ଜଳାପ ବାଣୀ ଅଳସ କହି
ନଖ ଘସି ଶାଢ଼ୀ ଦାନ୍ତେ ଚାହିଁଲେ ରାଇ
ବିହ୍ୱଳ ବିହଗ ଗୀତ ଭାସି ଆସିଲା

ରାଇ କାହ୍ନୁ ଦୁଇତନୁ ଧୀରେ ମିଶିଲା
ମାନସ ନିକୁଂଜେ ନିତି ମଧୁ ମିଳନ
ଭବ କେଶବ ସେ ରୂପ କରେ ଧ୍ୟାନ ।

●

॥ ୮ ॥

ତମସା ଚିର ଆଲୋକ ହୋଉ ଜଗତେ ଅଶେଷରେ
ଗତ ଦିବସ ବିଷାଦ ବ୍ୟଥା ଅସ୍ତେ ମିଶେରେ । ।୦।

ଅନ୍ଧାର ଧିରେ ଯାଉଛି ଲୁଚି
ନବୀନ ଉଷା ହସେ
ପୂରୁବ ଦିଗେ ସିଂଦୁର ବୋଳି
ମେଘ ବୋଇତ ଭାସେ
ତରଳ ସୁନା ସବୁଜ ପିନ୍ଧି
ଅତି ସୁନ୍ଦର ଦିଶେରେ ।୧।

କାଉ କୋଇଲି କଜ୍ଜଳ ପାତି
ଗାଇଲେ ନୂଆ ଗୀତି
ପ୍ରଭାତ ବାଆ ସଧୀରେ ବହେ
ଝଲସି ଉଠେ ଚଉ
ଆଗତ ଆସି ପ୍ରଣତି ଦିଏ
ବିଗତ ପାଶେରେ ।୨।



॥ ୯ ॥

ବୁଢ଼ା ବରଗଛ ମୁହିଁ, ଯୁଗ ଯୁଗ ଅଛୁ ଗୁହିଁ
ଲୁହର ଓହଳ ଝରେ, ନୟନେ ମୋର
ଆପଣାର କରି କେତେ କଲେଣି ପର ।
କେତେ ଆସିଲେ ଅଧଥି ମନେ ନାହିଁ ବାର ତଥି
ଗାଇଲେ ମିଳନଗୀତ ଅତି ମଧୁର ।୦।

ଘୁଘୁଣା ପତର ଝାଡ଼ି
କେତେ ବର ବେଶ ହେଲି
ଚପୁଡ଼ି ମୋ କଳିକାକୁ
ପ୍ରେମ ପ୍ରୀତି ବାଣ୍ଟି ଦେଲି
ଯାହା ଥିଲା ସବୁ ଦେଇ
ଶୂନ୍ୟ ମୋ ଘର ।୧।

ଟିକଏ ସଉଗ ଲାଗି ରହୁଣା ମୁଁ ଅଛୁ ଗୁହିଁ
ଋତୁ ପରେ ଋତୁ ଗଲେ କେହି କିଛୁ ଦେଲେ ନାହିଁ
ଶିଖିଲି ଜଗତେ କେହି ନୁହେଁ କାହାର ।୨।

ମୋ ଡାଳେ ବସା ବାନ୍ଧିଲେ
କପୋତ କପୋତୀ ଦୁଇ
କେତେ ମନକଥା ଦୁହେଁ
ହେଉଥିଲେ କୁହାକୁହି
କପୋତୀ ପଡ଼ିଲା ଜାଲେ
ନେଲା ଶବର ।
କପୋତର ଝୁରି ହେବା
ହୋଇଲା ସାର ।୩।

ପୁନେଇଁ ଜହ୍ନ ଉଇଁଲେ
କପୋତ କାନ୍ଦେ ବାହୁନି
କପୋତୀ ଲେ ଛାଡ଼ି ଗଲୁ
କେଉଁଠି ରହିଲୁ ରାଣୀ
ଛୁଆ ଦୁଇ ରଖିଗଲୁ ହେବେ କାହାର
କପୋତର ଝୁରି ହେବା ହୋଇଲା ସାର ।୩।

ଅଧାର ହେଲା କପୋତ
ଛୁଆ ଦୁହେଁ ହେଲେ ବଡ଼ ।
ବଞ୍ଚାଇଲା ନିଜେ ସହି
ବରଷା ପଥର ମାଡ଼
କାଳ ସାପ ଦିନେ ତାକୁ କଲା ଆହାର
ନିଖିଳ ଜଗତେ କେହି ନୁହେଁ କାହାର ।୪।



|| ୧୦ ||

ଭାଗ୍ୟ ମନ୍ଦବେଳେ ଅଂଧ ହେଲେ ଭଗବାନ
ଦଅ ଦାତା ଗରିବକୁ ଦଅ ଅନ୍ନ ଦାନ
ଚଗ କତରରେ ଶୋଇ ବିତଯାଏ ରାତି
ଝଡ଼ି ବରଷାର ମାଡ଼ କେତେ ସହେ ଜାତି
ଦୟା କର ହେ.......
ଦଅ ଦାତା ଶୂନ୍ୟ ଥାଳେ ମୋର ହେ |୧|

ମାଟିର ଫସଲ ଝୁଲେ ସୁନାର ଚଅଁର
ଦେଖି ଦେଖି ଆଖି ଥକେ ନୁହେଁ ସେ ଆମର
ଜୀବନର ଝାଳ ଝରେ ପେଟ ଜଳିଯାଏ
ଶୀତ ଖରା ମେଘ ଦାଉ ଏହି ଦେହ ସହେ
ଦଅ ଦାତା ହେ......
ଭୋକରେ ଘୁରାଇ ଦଏ ମଥାନହେ |୨|

ଜୀବନର ମଞ୍ଚ ଖରା କାଳରାତି ବତେ
ଯେଉଁ ଅଧରାତେ ଡ଼ାକେ ଗୁଡ ଥରେ ଶୀତେ
ଦେହେ ଫୁଟେ ଧଳାଛତୁ ତେଲ ମିଳେ ନାହିଁ
ମଶା ମାଛି ପିଉଛନ୍ତି ରକତ ଛଡ଼ାଇ
ଦଅ ଦାନ ହେ......
ମଂଗଳ କରିବେ ଭଗବାନ ହେ । |୩|

॥ ୧୧ ॥

ରଜନୀରେ ସଜନୀରେ
ସପନ ଦେଖିଲି ଦେଇଁ
ହଜିଗଲା ମୋ ଚେତନା
ଖୋଜି, ଖୋଜି, ହେଲି ବାଇ ।୦।

ବୁକେ କରି କରାଘାତ
ଡାକିଲି ହେ ପ୍ରାଣନାଥ
ଦାସୀ ଶେଯ ଲେଉଟାଇ
କଲା କବାଟ ଫିଟାଇ ।୧।

ଭ୍ରାନ୍ତି ବସିବାର ବେଳେ
ବିଧାତା ଭଗାରି ହେଲେ
ନ ହେଲା ଯଦି ମିଳନ
କି ହେବ ଏ ପ୍ରାଣ ଥାଇ ।୨।

ଅଳୀକ ନୁହଁ ସ୍ୱପନ
ସେହି ମୋ ପରାଣ ଧନ
ଏ କାହା ମୁଦି ମୋ ହାତେ
ମୋ ମାଣିକ ମୁଦି କାହିଁ ।୩।
ଖୋଜିଲି ନ ପାଇଲି ସନ୍ଧି
ଆକୁଳେ ମୁଁ କାନ୍ଦି, କାନ୍ଦି
ଶେଷ ହୋଇଗଲା ନିଶି
କୁକ୍କୁଟ ଉଠିଲେ ଗାଇ ।୪।

॥ ୧୨ ॥

## ଶିଶିର

ଶୀ ଶିର ଅଇଲା ଆଦ୍ୟ ମାର୍ଗଶୀର ମାସ
ଅଇନା ପର ଗଗନ ପବନ ଉଦାସ
ଖୋଟାଳିଆ ଚନ୍ଦ୍ରଟିଏ
ହସି ଦେଇ କହୁଛି ଲୋ
ଜୋଛନାର ଦାଗ ଦର୍ଶେ କର୍ଣ୍ଣ ଫୁଲଗାଲେ
କାନ୍ତ ମୋର ପରବାସୀ
ଗଲେ ସାତ ମାସ । ୧ ।

## ହେମନ୍ତ

ଚଟା ଲଗେ ଅଠ ଲୋ ପୁଷ ମାସ ଗୁଡ
ଫିକା ଫିକା କୁହୁଡ଼ିରେ ଡାଢ ଉଠେ ଗୁଡ
ଚଟାଉ ଲେଖନ୍ତି ସେ କଟକରୁ ଥାଇ
ଅଟକ ଯାଉଛୁ ଏଠି ମନ ଲଗୁ ନାହିଁ ।
ନହ୍ମକୁ ଅନାଇଁ କରି ରହେ ଓଠ ଯାଉ । ।୨।

## ବସନ୍ତ

ବସନ୍ତ ଆସିଲା ଲୋ ବସନ୍ତ ଆସିଲା
ବନ ଫୁଲ ମନ ଫୁଲେ ବଜନେ ଫୁଟିଲା
କୁହୁ ବୋଲେ କୋଇଲି, କୋହ ଉଠେ ଉଚ୍ଛୁଳି
ପଲ୍ଲବିଲା କାନନ, ଉଲ୍ଲସିଲା ପବଣ,
କୁଶୀ ବୁକେ ମାରବାକୁ ବୃନ୍ଦନୀ ହସିଲା ।୩।

## ଗ୍ରୀଷ୍ମ

ଗ୍ରୀଷ୍ମ ଖରତାପ-ରୁଦ୍ର ବଇଶାଖ
ଧୂର୍ଜଟୀ ଜଟା ଜାଲ ଫିଟିଲା,

ଆକୁଳ ଜୀବକୁଳ ଲେଉଁଟିଲେ ତରୁ ମୂଳ
କରାଳ ପ୍ରଭଞ୍ଜନା ଛୁଟିଲା
ଶୂନ୍ୟ ଶେଯେ ଶୋଇ ବିଡଲା ବିନ୍ଧ୍ୟବଶୀ
ଖୋସା ତଗ୍ନ ଖସେ ଫିଟି ପଡ଼େ କବରୀ
କ୍ଳାନ୍ତ ତନୁମନ କାନ୍ଦେ ଯଉବନ
ଧୂସର ଆଶାଫୁଲ ଲେଟିଲା ।୪।

## ବର୍ଷା

ବାଜେ ମେଘ ଡମ୍ବରୁ-ଝରେ ଘନ ଅମ୍ବରୁ
କଦମ୍ବ, ମାଲତୀ, କିଆ ଫୁଟିଲା
ଛଳ ଛଳ ଚଞ୍ଚଳ-ଝର ଝର ସଲ୍ଲିଳ
କଲ୍ଲୋଳ କୂଳ ଲଙ୍ଘି ଛୁଟିଲା
ଭେକ ଭକ ଭକ ଡାକେ ଡାହୁକ
ଚକ ଚକ ଚପଳାର ଚମକ ।
ଘନ ଘୋର ଘନ ଘନ
ଛନ ଛନ ଅପଘନ
ବିଚ୍ଛେଦ ଛୁରୀ କଳିଜା କାଟିଲା ।୫।

## ଶରତ

ଶୁଭ୍ର ଗଗନ ତଳେ
ହସି ଦେଲା ଶରତ,
ଶାଂଗ ଶିଉଳି ବାସେ
ଧରା ହେଲା ମେହୃତ,
ସ୍ୱଚ୍ଛ ତଟିନୀ ତଟେ
କାଶ ଫୁଲ ଫୁଟିଲା,
ବଂଧୁ ମୋ ପରଦେଶୀ
ତନୁ ଶିରା ତୁଟିଲା
ଋତୁ ପରେ ଋତୁ ଯାଏ
ବିରହିଣୀ ଆହୃତ ।୬।

|| ୧୩ ||

ତୋଷ ତେଜ ବରଜ ଗୃଜ ତନୁଜ ଆଜ
ଘେନ ମୋର ଅରଜ ନାହିଁ ଶେଷ
ମଂଜଲ ଲଣି କଞ୍ଜ, ହସେ କୁସୁମ କୁଞ୍ଜ
ହଜମା ଦେବେ ଲଜ ଦେଖି ଏ ବେଶ ।୦।

ନୀଳା ବିନୋଦ ମୋର ନୀଳ ଶାଢ଼ିଟି ନେଇ
ଅଂଧାରେ ପିନ୍ଧିଛ ଗୋ ମୁଁ ଏବେ ପିନ୍ଧିବି କାହିଁ
ତବ ପିତ ବସନ ମୋ ଅଂଗେ ଶୋଭିବନ
ସଜଡା କୁଞ୍ଜା ଫିଟି ଲୋଟେ କେଶ
ଘେନ ମୋର ଅରଜ ନାହିଁ ଶେଷ ।୧।

ତବ କରଜ ଦାଗ ବକ୍ଷେ ଗୋଟି ଗୋଟି
କେତେ ନର୍ଲନ ଶ୍ୟାମ ଲୁହାଇ କୋଟି କୋଟି
ନକୁଞ୍ଜ ଅଟଭାର ବଟପି ତାଙ୍କେ ବସି
କଖ୍ୟଟୀ ତାଙ୍କେ ଘଇ ଘରେ ଆସ ।୨।

ମୋ ମରକତ ହାର ଛଡ଼ାଇ ଦେଲ ଟାଣି
ଜଟିଲା ଦେବ ଗାଲି ପାରିବ ଯଦ ଜାଣି
କୁଟୀଳା କୁନ୍ଦାଟିବ କଳଙ୍କ ଚହଟିବ
ନରବ ଗିରିଧର ଗୀର ଦୋଷ
ଘେନ ମୋର ଅରଜ······ ।୩।

ତୁମ ଲଗି ରାଧିକା, ଶତ ବାଧା ସହିବ
ହେ ଚିଦାନନ୍ଦ ଯଦ ପଦରେଣୁ ପାଇବ
ଅଧମ ପଲ୍ଲୀକବି ଯୁଗଳ ପଦଧ୍ୟାୟୀ
ମିଳନ ଗୀତ କଲ ପର କାଶ
ଘେନ ମୋର ଅରଜ······ ।୪।

●

# ଶୁଦ୍ଧିପତ୍ର

ସମସ୍ତ ପ୍ରକାର ସତର୍କତା ଅବଲମ୍ବନ ସତ୍ତ୍ୱେ ଏ ଗ୍ରନ୍ଥର ମୁଦ୍ରଣରେ କେତେକ ଦୋଷ ତ୍ରୁଟି ରହିଯାଇଛି । ତେଣୁ ଏ ଶୁଦ୍ଧିପତ୍ର ଅନୁଯାୟୀ ଭ୍ରମ ସଂଶୋଧନ କରି ଗ୍ରନ୍ଥ ଅଧ୍ୟୟନ ପାଇଁ ପାଠକମାନଙ୍କୁ ନିବେଦନ କରୁଛୁ ।

| ପୃଷ୍ଠା | ଧାଡ଼ି | ହୋଇଛି | ହେବ |
|---|---|---|---|
| ୧ | ୧୪ | ବର୍ଷ | ବର୍ଷ |
| ୧ | ୨୧ | ଇତମଧ୍ୟେ | ଇତମଧ୍ୟରେ |
| ୧ | ୨୨ | ସୃଷ୍ଟ | ସୃଷ୍ଟି |
| ୨ | ୩ | ମାତୃଭୂମୀ | ମାତୃଭୂମି |
| ୨ | ୧୬ | ପ୍ରକୃରେ | ପ୍ରକୃତରେ |
| ୨ | ୨୦ | ପୂଣ୍ୟଭୂମୀ | ପୂଣ୍ୟଭୂମି |
| ୨ | ୨୬ | ସନ୍ନୀସ୍ତ | ସନ୍ନିସ୍ତ |
| ୪ | ୨ | ସଂନ୍ଧପ୍ରତା | ସଂନ୍ଧିପ୍ରତା |
| ୫ | ୩ | ଏକନିଷ୍ଟ | ଏକନିଷ୍ଠ |
| ୫ | ୬ | ସଗର | ସାଗର |
| ୬ | ୧୯ | ଉପଯୁକ୍ତ | ଉପର୍ଯ୍ୟୁକ୍ତ |
| ୬ | ୧୮ | ତୁଳି | ତୁଳି |
| ୭ | ୨୪ | ନୀଳଗୀଶ | ନୀଳଗିଶ |
| ୮ | ୧୧ | ଖୋଷ-କନ୍ଧ | ଖୋଷା-କାନ୍ଧ |
| ୧୦ | ୨୫ | ବୋହୁ | ବୋହୂ |
| ୧୫ | ୭ | ଭକ୍ତ | ଭକ୍ତ |
| ୧୬ | ୧୩ | ମୁରଲୀ | ମୁରଲୀ |
| ୨୧ | ୨୭ | ପ୍ରଢଶୀଳ | ପ୍ରଗଢଶୀଳ |
| ୨୧ | ୨୭ | ଭୂମୀକା | ଭୂମିକା |

| ପୃଷ୍ଠା | ଧାଡ଼ି | ହୋଇଛି | ହେବ |
|---|---|---|---|
| ୨୨ | ୫ | ପ୍ରତିଦ୍ୱନ୍ଦ୍ୱି | ପ୍ରତିଦ୍ୱନ୍ଦ୍ୱୀ |
| ୨୨ | ୨୩ | ଷ୍ଠରଥ | ଷ୍ଠରଥୀ |
| ୨୬ | ୨୬ | ହୃଢ | ଦୃଢ |
| ୨୭ | ୩ | ସମ୍ଭୃତ | ସମ୍ଭ୍ରମ |
| ୨୯ | ୧୩ | ପରବର୍ତ୍ତିତ | ପରିବର୍ତ୍ତିତ |
| ୩୦ | ୧୪ | ଦାସ୍ୟୀକୁ | ଦାସ୍ୟିକୁ |
| ୩୧ | ୮ | ବୃଜ୍ଜୀବନ | ବୃତ୍ତିଜୀବୀ |
| ୩୪ | ୧୯ | ଗଗ୍ରବ | ଗରବ |
| ୫୫ | ୮ | ଲଭିବ | ଲଭି |
| ୫୬ | ୧ | ମନୀଷ | ମନୀଷା |
| ୫୬ | ୧୨ | ପ୍ରାତଭଙ୍କ | ଶାନ୍ତବଙ୍କ |
| ୬୧ | ୧୪ | ଲଙ୍କ୍ୟା | ଲଙ୍କା |
| ୬୬ | ୩ | ମୂଂରଳୀ | ମୁରଳୀ |
| ୭୭ | ୧୭ | ଗେଲ | ଗେହ୍ଲା |
| ୭୮ | ୭ | ତୁଣ | ତ୍ରାଣ |
| ୯୦ | ୩ | ଧିରେ | ଧୀରେ |
| ୧୦୨ | ୮ | ପସବ୍ର | ପସେ |
| ୧୦୨ | ୨୨ | ସ୍ପୃଶେ | ସ୍ପୃଷେ |
| ୧୨୫ | ୧୯ | କ୍ଷିର-ନର | କ୍ଷୀର-ନୀର |
| ୧୨୮ | ୫ | ନଲ | ନୀଲ |
| ୧୩୩ | ୧ | ଶାଶାଗୁଆ | ଶାଗୁଆ |
| ୧୩୬ | ୭ | ଦକ୍ଷୀଣା | ଦକ୍ଷିଣା |
| ୧୪୩ | ୧ | ସ୍ୱଢ | ଚଇଢ ସ୍ୱଢ |
| ୧୪୩ | ୪ | ଅପସ୍ୱଜୀତା | ଅପସ୍ୱଜିତା |
| ୧୪୪ | ୩ | ମରଚକା | ମସ୍ୱଚକା |
| ୧୫୨ | [illegible] | ସଂନ୍ଧା | ସନ୍ଧ୍ୟା |
| ୧୫୨ | ୮ | ବଦାସ୍ୱ | ବଦାର |
| ୧୫୨ | ୯ | ନଶାଦ | ବିଷାଦ |
| ୧୫୩ | ୩ | ତାରବାପୁଁ | ପରବାପୁଁ |

| ପୃଷ୍ଠା | ଧାଡ଼ି | ହୋଇଛି | ହେବ |
|---|---|---|---|
| ୧୫୪ | ୧୨ | ଦୁଆରେ | କୁଆରେ |
| ୧୫୮ | ୨୦ | ଛଇଲି | ଛଇଲା |
| ୧୫୯ | ୧୨ | କେତେକୀ | କେତକୀ |
| ୧୬୨ | ୨ | ଗାଉଛି-ନୂଆ | ଗାଉଛିନୂଆ |
| ୧୬୨ | ୦୫ | ହରକାକୁ | ହରବାକୁ |
| ୧୬୨ | ୧୮ | ପୀରଣ୍ଠ | ପୀଢ଼ଠ |
| ୧୬୮ | ୯ | ମରୟାପ | ମରୟାଏ |
| ୦୬୮ | ୨୮ | ସର୍ପଣୀ | ସର୍ପିଣୀ |
| ୧୭୦ | ୬ | ଭୀକ୍ଷା | ଭିକ୍ଷା |
| ୧୭୫ | ୩ | ଘେନ | ଘେନଛି |
| ୧୭୭ | ୨୦ | ଅଳଷ | ଅଳପ |
| ୧୭୮ | ୩ | ଧିରେ | ଧୀରେ |
| ୧୭୮ | ୫ | ସିଂଦୁର | ସିନ୍ଦୁର |
| ୧୮୧ | ୨ | ଗଗ୍ଧବ | ଗରବ |
| ୧୮୫ | ୨ | ଶେଶ | ଶେଷ |
| ୧୮୫ | ୭ | ପିତ | ପୀତ |
| ୧୮୭ | ୧୭ | ନରବ | ନୀରବ |



"ଶଠ ମିତ୍ରର ମିତ୍ରତା ଠାରୁ
ବଳିଷ୍ଠ ଶତ୍ରୁତା ଅନେକ ଗୁଣରେ ଶ୍ରେୟସ୍କର ।"

—କୃଷ୍ଣପ୍ରସାଦ